ପୃଥିବୀର ଶ୍ରେଷ୍ଠ ଉପନ୍ୟାସ

( ୪ )

# ସିଦ୍ଧାର୍ଥ

ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

କେ. ମହାପାତ୍ର ଏଣ୍ଡ କୋ:
ଛାତ୍ରସାଥୀ ଅଫିସ, କଟକ-୨

ପ୍ରଥମ ପ୍ରକାଶନ
ଅକ୍ଟୋବର, ୧୯୭୬

ପ୍ରକାଶକ
କେ. ମହାପାତ୍ର ଏଣ୍ଡ୍ କୋ:,
ଗ୍ରନ୍ଥସାଥୀ ଅଫିସ,
କଟକ-୨

ମୁଦ୍ରାକର
ଶ୍ରୀ ରବୀନ୍ଦ୍ର ନାଥ କର,
ଶ୍ରୀ ନୀଳକଣ୍ଠ ପ୍ରେସ,
ବୃନ୍ଦାବନ ଲେନ୍, କଟକ-୨

ପ୍ରଚ୍ଛଦପଟ ଶିଳ୍ପୀ
ଶ୍ରୀନାଥ ଚାଟାର୍ଜୀ

ପ୍ରଚ୍ଛଦପଟ ବ୍ଲକ
ପ୍ରସେସ ଏଣ୍ଡ ଅଫ୍‌ସେଟ କୋ:,
କଟକ-୨

ପ୍ରଚ୍ଛଦପଟ ମୁଦ୍ରଣ
ଛାତ୍ରସାଥୀ ପ୍ରେସ,
କଟକ-୨

# ସୂଚୀ

## ଲକ୍ଷ୍ମୀ ନାରାୟଣ ମହାନ୍ତଙ୍କ ପ୍ରକାଶିତ-ସାହିତ୍ୟ କୃତି

॥ ଉପନ୍ୟାସ ॥

ପିଶାଚ / ହାତକଡ଼ି / ମାୟାପୁରୀ / ଚକ୍ରବ୍ୟୂହ / ହରଣଚୋର / ପ୍ରଥମ ପ୍ରେମ / କପଟ ପାଶା ॥

॥ ମୌଳିକ ଗଳ୍ପ ଗୁଚ୍ଛ ॥

ନୈବେଦ୍ୟ / ଓଢ଼ଣା ଖୋଲ / ଉଡ଼ନ୍ତା ବୋମା / ଗୋଟିଏ ସନ୍ଧ୍ୟା / ମଳୟ ବହୁଛି / ଅନ୍ଧ ଦେଶକୁ ଗଲି / ଦେହ ନିଲାମ ହେଉଛି / ଗରଳେ କଲୁ ଅଧିକାରୀ ॥

॥ ଅନୁବାଦ ॥

ଅଙ୍କୁର / ସଙ୍ଗମ / ବନ୍ଧଘର / ବନଗୃହୀ / ନଗ୍ନ ସତ୍ୟ / କାଳାନ୍ତକ / ଅଙ୍ଗୀକାର / ରମଣୀ ମନ / ମାଆ ଓ ପୁଅ / ବାତୋୟାଲ / ଦୁଇଟି ନାରୀ / ଆନନ୍ଦ କୁମାର / ଖୁନ୍ ପରେ ଖୁନ୍ / ଆନା କାରେନିନା / ଅପରିଚିତାର ପତ୍ର / ବିଦାୟ, ଗୁରୁଦେବ / ଦେଶ ବିଦେଶର କାହାଣୀ / ଦୁଇଟି ନଗରୀର କାହାଣୀ / ବିବେକାନନ୍ଦ : ଜୀବନ ଓ ବାଣୀ / ନୋବେଲ ଲରିୟେଟଙ୍କ ସରସ ଗପ / ଆମେରିକାର ଶ୍ରେଷ୍ଠ ଗଳ୍ପ / ଇଂଲଣ୍ଡର ଶ୍ରେଷ୍ଠ ଗଳ୍ପ / ସୋଭିଏଟ୍‌ର ଶ୍ରେଷ୍ଠ ଗଳ୍ପ / ଫ୍ରାନ୍‌ସର ଶ୍ରେଷ୍ଠ ଗଳ୍ପ / ଜର୍ମାନୀର ଶ୍ରେଷ୍ଠ ଗଳ୍ପ / ଇଟାଲୀର ଶ୍ରେଷ୍ଠ ଗଳ୍ପ / ୟୁରୋପର ଶ୍ରେଷ୍ଠ ଗଳ୍ପ / ଅପଛାୟା ॥

॥ ପୃଥିବୀର ଶ୍ରେଷ୍ଠ ଉପନ୍ୟାସ ॥

କାଦମ୍ବରୀ / ଆନନ୍ଦ ମଠ / ଜନନୀ / ଅଦୃଶ୍ୟ ମାନବ / ବସୁଧା / ଯୁଦ୍ଧ ଓ ଶାନ୍ତି / ସୂର୍ଯ୍ୟାସ୍ତ / ଲଳିତା / ଦୁରନ୍ତ ଅଭିଳାଷ ॥

॥ ପ୍ରାପ୍ତି ସ୍ଥାନ ॥

**କେ. ମହାପାତ୍ର ଏଣ୍ଡ୍ କୋ:, କଟକ-୨**

# ନବମ କୋଠରୀ

ଦୁଇ ହଜାର ବର୍ଷ ତଳର ଭାରତୀୟ ପଟଭୂମିକା ତଥା ଦର୍ଶନ ଉପରେ ଜଣେ ୟୁରୋପୀୟ ସାହିତ୍ୟିକ ରଚନାକଲେ ଏକ ବସ୍ତୁନିଷ୍ଠ ଓ ରସୋତ୍ତୀର୍ଣ୍ଣ ମହନୀୟ କାବ୍ୟୋପନ୍ୟାସ "ସିଦ୍ଧାର୍ଥ"-୧୯୨୩ ସାଲରେ । ବୁଦ୍ଧଦେବଙ୍କର ସମସାମୟିକ ସିଦ୍ଧାର୍ଥ ନାମଧେୟ ତରୁଣ ବ୍ରାହ୍ମଣ କୁମାର ନିର୍ବାଣ ଲାଭର ଆଶାରେ ସଂସାର ତ୍ୟାଗ କରି କଠୋର ତପସ୍ୟାରେ ନିମଗ୍ନ ହେଲା । ବୁଦ୍ଧଦେବଙ୍କର ଉପଦେଶ ଲାଭ କରି ସେ ଯଥାର୍ଥ ପଥ ଖୋଜି ପାଇଲା ନାହିଁ । ତେଣୁ ଶ୍ରମଣର ପୋଷାକ ତ୍ୟାଗ କରି ସେ ଲୋକାଳୟକୁ ଫେରିଗଲା । ଅଶରେ ସାଂସାରିକ ଜୀବନର ସକଳ ଆନନ୍ଦ ପରିପୂର୍ଣ୍ଣ ରୂପେ ଉପଭୋଗ କରି ଯିଏ ହଠାତ୍ ସେ ଉପଲବ୍ଧି କଲା ଯେ ଏସବୁ ଅଲୀକ ଓ ମିଥ୍ୟା । ପୁଣି ସେ ପଥରେ ବାହାରି ପଡ଼ିଲା । ଏଥର ନଦୀ ଘାଟରେ ଜଣେ ନାଉରିର ସାହଚର୍ଯ୍ୟରେ ସେ ଶାନ୍ତି ପାଇଲା; ସତ୍ୟ ଓ ଆନନ୍ଦର ସନ୍ଧାନ ଲଭିଲା । ଏହି କାହାଣୀର ମାଧୂର୍ଯ୍ୟ ଓ ଦାର୍ଶନିକ ତତ୍ତ୍ୱର ସୌନ୍ଦର୍ଯ୍ୟ ସକଳ ଶ୍ରେଣୀର ପାଠକଙ୍କୁ ଗଭୀର ଭାବରେ ଅଭିଭୂତ କରେ । ତାଙ୍କର ବହୁ ବିଶ୍ୱ ବିଖ୍ୟାତ ଗ୍ରନ୍ଥ ମଧ୍ୟରୁ "ସିଦ୍ଧାର୍ଥ" ସର୍ବାଧିକ ପରିଚିତ ତଥା ପ୍ରଚୁରିତ । ଟମାସ ମାନ ଓ କାଫକାଙ୍କର ସମ-ଗୋଷ୍ଠୀୟ ଗଦ୍ୟ ଲେଖକ ହିସାବରେ ସେ ଦରବାରରେ ସମ୍ମାନନୀୟ ।

ନୋବେଲ ଲରିୟେଟ ହାରମେନ ହେସଙ୍କର ସାହିତ୍ୟିକ ଚରିତ୍ର ବିଚାର କରି ପଣ୍ଡିତମାନେ ମନ୍ତବ୍ୟ କରିଛନ୍ତି—"ଗୀତ ଲେଖାର ମିଜାଜ ନେଇ ସେ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ

ସୁଦ୍ଧା କ୍ରମେ କ୍ରମେ ତାଙ୍କର ମିଜାଜ ମହାକାବ୍ୟ ଆଡ଼କୁ ଆଗେଇ ଯାଇଛି । ସେ ବ୍ୟକ୍ତିଗତ ଭାବନାର ଜଗତରୁ ଯାଇ ନୈର୍ବ୍ୟକ୍ତିକ ଜଗତରେ ପହଞ୍ଚିଛନ୍ତି । ଦୁଇ ବିଭିନ୍ନ ଓ ବିପରୀତ ଶକ୍ତି ଭିତରେ ସମନ୍ୱୟ ଆନୟନ ହେଉଛି ତାହାଙ୍କ ସାହିତ୍ୟର ମୂଳ ଲକ୍ଷ୍ୟ ।"

ତିନି ଜଣ ନୋବେଲ ପୁରସ୍କାର ବିଜୟୀ ବିଦେଶୀ ସାହିତ୍ୟିକ ଭାରତବର୍ଷକୁ କେନ୍ଦ୍ର କରି ଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରୁ ନୈଷ୍ଠିକ ଇଂରେଜ ରାଜଭକ୍ତ ରୁଡ଼ୟାର୍ଡ଼ କିପଲିଙ୍ଗଙ୍କ (୧୯୦୭) ରଚନାରେ ଅବଶ୍ୟ ଭାରତର ଛବି ଅଛି, ମାତ୍ର ପ୍ରାଣର ସ୍ପନ୍ଦନ ନାହିଁ । ଡେନେମାର ସାହିତ୍ୟିକ କାର୍ଲ ଜେଲେରୁପଙ୍କର (୧୯୧୭) ବୌଦ୍ଧ ଉପାଖ୍ୟାନ ଭିତ୍ତିକ ଉପନ୍ୟାସ "ତୀର୍ଥଯାତ୍ରୀ କାମାନିତା"ରେ ବିଷୟ ବସ୍ତୁ ପ୍ରତି ଲେଖକଙ୍କର ଯଥେଷ୍ଟ ଶ୍ରଦ୍ଧାଶୀଳତା ପ୍ରକଟିତ ହୋଇଛି । ଜର୍ମାନ ସାହିତ୍ୟିକ ଟମାସ ମାନ (୧୯୨୯) ବେତାଳ ପଞ୍ଚବିଂଶତିର ଷଷ୍ଠ ଉପାଖ୍ୟାନକୁ ଅବଲମ୍ବନ କରି ଜନପ୍ରିୟ ଉପନ୍ୟାସ "ମସ୍ତକ ବିନିମୟ" ରଚନା କରିଛନ୍ତି, ଯେଉଁଥିରେ ହିନ୍ଦୁ ଦର୍ଶନର ସମ୍ୟକ ବିଶ୍ଳେଷଣ ପରିଲକ୍ଷିତ । ମାତ୍ର ହେସଙ୍କର ସମଗ୍ର ରଚନାବଳୀରେ ହିନ୍ଦୁ ତଥା ବୌଦ୍ଧ ଦର୍ଶନର ମୂଳ ସତ୍ୟ ସବୁ ଓତପ୍ରୋତ ଭାବରେ ଜଡ଼ିତ ରହିଛି । "ସିଦ୍ଧାର୍ଥ" ତହିଁର ଏକ ଉଜ୍ଜ୍ୱଳ ଉଦାହରଣ ।

ଦକ୍ଷିଣ ଜର୍ମାନୀର ପ୍ରାକୃତିକ ସୌନ୍ଦର୍ଯ୍ୟମୟ କ୍ଷୁଦ୍ର ସହର କାଲ୍‌ଭରେ ହେସ ୧୮୭୭ ଜୁଲାଇ ୨ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଓ ମାତାମହ ଭାରତୀୟ ~~ଖ୍ରୀଷ୍ଟ~~ ପାଦ୍ରୀ ଥିଲେ । ତାଙ୍କର ମାଆଙ୍କର ଜନ୍ମ ଅବଶ୍ୟ ଭାରତବର୍ଷରେ । ତାଙ୍କର ମାତାମହଙ୍କର ଭାରତୀୟ ବିଦ୍ୟାରେ

ଅଗାଧ ପାଣ୍ଡିତ୍ୟ ଥିବାରୁ, ଶୈଶବରୁ ହେସ ଭାରତୀୟ ଇତିହାସ ଓ ଦର୍ଶନର ସଂସ୍ପର୍ଶରେ ଆସିବାର ଯଥେଷ୍ଟ ସୁଯୋଗ ପାଇଥିଲେ । ସେ ନିଜେ ସ୍ୱୀକାର କରିଛନ୍ତି ଯେ ଏହି ମହାନ ଜାତୀୟ ଐତିହ୍ୟରୁ ସେ-ଗଭୀର ପ୍ରେରଣା ଲଭିଥିଲେ । ପିତାମାତା ଆଶା କରିଥିଲେ, ପୂର୍ବ ପୁରୁଷଙ୍କର ପଥ ଅନୁସରଣ କରି ସେ ଧର୍ମ ଯାଜକ ହୋଇ ଚୀନ କିମ୍ବା ଭାରତବର୍ଷକୁ ଯିବେ । କିନ୍ତୁ ଶୈଶବରୁ ଏହି ଧରାବନ୍ଧା ଜୀବନ ତାହାଙ୍କୁ ଅସହ୍ୟ ବୋଧ ହେଲା । ଇତି ମଧ୍ୟରେ ସେ କାବ୍ୟ ଦେବୀଙ୍କର ରସାମୃତ ପାନ କରିଥିଲେ ଏବଂ ଗୋଟିଏ ନିଜସ୍ୱ ଜୀବନ ଦର୍ଶନର ଅସ୍ପଷ୍ଟ ଅନୁଭୂତି ତାହାଙ୍କୁ ଚଞ୍ଚଳ କଲା । ତେଣୁ ସ୍ୱନିର୍ବାଚିତ ପଥରେ ଅଗ୍ରସର ହେବାର ଆକାଙ୍‌କ୍ଷାରେ ବିଦ୍ରୋହ ଘୋଷଣା କରି ସେ ପୋଥିଗତ ଧର୍ମ ଶିକ୍ଷାରେ ଡୋରି ବାନ୍ଧିଲେ । ଏଥିରେ ତାଙ୍କର ପିତାମାତା ଅବଶ୍ୟ ବିଚଳିତ ହେଲେ । ପୁଅର କାନ୍ଧରୁ ଭୂତ ଛଡ଼ାଇବା ଉଦ୍ଦେଶ୍ୟରେ ସେମାନେ ହେସଙ୍କୁ ଜର୍ମାନୀର ଜଣେ ଧର୍ମ ଗୁରୁଙ୍କ ଠାକୁ ନେଲେ । କିନ୍ତୁ କ୍ଷୀଣକାୟ କିଶୋରର ସ୍ୱଭାବର କାଠିନ୍ୟ ନିକଟରେ ସବୁ ଗୁଣି ଗାରେଡ଼ି ବ୍ୟର୍ଥ ହେଲା । ହେସ ଚବିଶ ବର୍ଷ ବୟସରେ ନିଜର ପ୍ରଥମ ଅପରିଣତ ଆତ୍ମଜୀବନୀମୂଳକ ଉପନ୍ୟାସ "ଚକ୍ର ତଳେ"ରେ ଏହି ଘଟଣାଟି ଲିପିବଦ୍ଧ କରିଛନ୍ତି । ସେହି ପ୍ରସଙ୍ଗରେ ସେ କହିଛନ୍ତି— "ଦୁନିଆର ରଙ୍ଗମଞ୍ଚରେ ଯେଉଁ ନର ନାରୀମାନେ ଅଂଶ ଗ୍ରହଣ କରିଛନ୍ତି ମୁଁ ସେମାନଙ୍କର ଅନ୍ତରଙ୍ଗ ପରିଚୟ ପାଇବାକୁ ଚାହେଁ, ରାସ୍ତାରେ ଚାଲି ଯାଉଥିବା ଗାଡ଼ିର ଶବ୍ଦ କାନ ପାତି ଶୁଣେ, ଦୂର ଦୂରାନ୍ତର ଅଖ୍ୟାତ ସ୍ଥାନର ଛୋଟ ଛୋଟ ସରାଇଖାନାରେ ମଦ ଗିଲାସ ହାତରେ ଧରି ଗପ କରି ଅଳସ ମୁହୂର୍ତ୍ତଗୁଡ଼ିକ କଟାଇ ଦେବାର ବାସନା ମୋ ମନରେ ଜାଗେ, ଉଚ୍ଛ୍ୱଳ ତରୁଣୀମାନଙ୍କ ସହିତ ଶାଳୀନତାର ବନ୍ଧନମୁକ୍ତ ଭାଷାରେ

ପ୍ରାଣ ଖୋଲି କଥା କହିବାକୁ, ଆଉ କେବେ କେବେ ଧର୍ମର କ୍ଲବରେ ବଲପ୍ଲାର୍ଡ଼ ଖେଳିବାକୁ ମୋର ମନହୁଏ !'' ଏଥିରେ ତାହାଙ୍କ ଜୀବନର ଗୋଟିଏ ପ୍ରଧାନ ସ୍ୱରର ପରିଚୟ ଧରା ପଡ଼େ । ପୃଥିବୀରେ ସକଳ ସୁନ୍ଦର ଓ କଦର୍ଯ୍ୟ, ମହତ୍ ଓ ତୁଚ୍ଛ ବିଷୟର ପ୍ରତ୍ୟକ୍ଷ ଅଭିଜ୍ଞତା ତାହାଙ୍କ ଜୀବନରେ ଶ୍ରେଷ୍ଠ ଶିକ୍ଷଣୀୟ ସମ୍ପଦ । ଏହି ତତ୍ତ୍ୱ ତାଙ୍କର ପରବର୍ତ୍ତୀ ପ୍ରାୟ ସକଳ ଗ୍ରନ୍ଥରେ ପରୋକ୍ଷ ଭାବରେ ଏବଂ "ସିଦ୍ଧାର୍ଥ"ରେ ପ୍ରତ୍ୟକ୍ଷ ଭାବରେ କୁହା ଯାଇଛି । ତାଙ୍କର ପରବର୍ତ୍ତୀ ଉପନ୍ୟାସ "ନାରସିଜ ଉଣ୍ଡ ଗୋଲ୍‌ଡ଼ମଣ୍ଡ''ରେ ଅନ୍ୟ ଏକ ବାଳକର ଚରିତ୍ର ପ୍ରଦତ୍ତ ହୋଇଛି, ଯାହାକୁ ପିତାର ପ୍ରଭୁତ୍ୱର କଠୋରତା ଯୋଗୁଁ ନିଜ ଆତ୍ମାର ପ୍ରେରଣାକୁ ଲୁପ୍ତ ରଖିବାକୁ ପଡ଼ିଥିଲି ।

ବିଦ୍ୟାଳୟ ଛାଡ଼ି ହେସ ଜଣେ ଘଡ଼ିବାଲା ଅଧୀନରେ ଶିକ୍ଷାନବିସ ଭାବରେ କାର୍ଯ୍ୟ କଲେ । ଏଠାକାର ଶ୍ରମିକ ଜୀବନର ସୁଖ-ଦୁଃଖର ଗଭୀର ଅଭିଜ୍ଞତା ତାଙ୍କର ମର୍ମସ୍ପର୍ଶୀ ଉପନ୍ୟାସ "କ୍ନୁଲ୍‌ପ''ରେ ପ୍ରତିଫଳିତ ହୋଇଛି । ତା ପରେ ସେ ବିଶ୍ୱବିଦ୍ୟାଳୟର ବହି ଦୋକାନରେ ଗୋଟିଏ କାମ ପାଇ ଟୁବିନଗେନକୁ ଗଲେ ଏବଂ ସେଠାରେ ଜର୍ମାନ ସାହିତ୍ୟର ସାଗରରେ ଅମୃତ ମନ୍ଥନ କଲେ । ମାତ୍ର ଦରମା ଖୁବ୍ କମ ଥିବାରୁ, ଆଉ ଗୋଟିଏ ବହି ଦୋକାନରେ ଚାକିରି ପାଇ ସେ ବେସ୍‌ଲକୁ ଚାଲିଗଲେ । ବାସ୍ତବିକ ଏଠାରେ ହିଁ ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ ହେଲା ଏବଂ କେତୋଟି ସଫଳ କୃତି ପରେ ସେ ଏକ ସମ୍ଭ୍ରାନ୍ତ ପରିବାରରେ ବିବାହ କଲେ । ଜୀବିକା ଅର୍ଜନ ନିମନ୍ତେ ଦଶ ବର୍ଷ କାଳ ତାହାଙ୍କୁ ବିଭିନ୍ନ ପେଷା ଅବଲମ୍ବନ କରିବାକୁ ହୋଇଥିଲା । ତାଙ୍କର ତତ୍କାଳୀନ ମାନସିକ ବିପ୍ଳବର ନିଖୁଣ ଛବି ନିଜର ବିଖ୍ୟାତ ଉପନ୍ୟାସ " ପିଟାର କାମେନଜିନ୍ଦ୍''ରେ ଦେଖିବାକୁ ମିଳେ ।

ୟୁରୋପୀୟ କୃତ୍ରିମ ସଭ୍ୟତାର ନିଷ୍ଠୁର ହାତରୁ ମୁକ୍ତ ପାଇବା ଉଦ୍ଦେଶ୍ୟରେ ହେସ ୧୯୧୧ରେ ତାଙ୍କର ମାଆଙ୍କର ମାତୃଭୂମି ତଥା ସକଳ ଦର୍ଶନ ଓ ସଂସ୍କୃତିର ମିଳନ କ୍ଷେତ୍ର ଭାରତକୁ ଆସିଲେ । କିନ୍ତୁ ତାଙ୍କର ସେହି ଉଚ୍ଚ ଆଶା ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା । ତାଙ୍କର "ଇଣ୍ଡିୟାନ ବୁଚ" ଗ୍ରନ୍ଥରୁ ଜଣା ପଡ଼େ, ବାସ୍ତବ ଭାରତ ତାଙ୍କର କଳ୍ପିତ ଭାରତକୁ ନିର୍ମମ ଭାବରେ ହତାଶ କଲା । ପ୍ରଥମ ମହାଯୁଦ୍ଧ ଭିତରେ ମାନବିକ ଆତ୍ମା ବିରୁଦ୍ଧରେ ଯାନ୍ତ୍ରିକ ସଭ୍ୟତାର ଯେଉଁ ଅଭିଯାନ ଦିନେ ସେ ଦେଖିଥିଲେ, ଛଦ୍ମନାମରେ ପ୍ରକାଶିତ ଉପନ୍ୟାସ "ଡେମିୟାନ"ରେ (୧୯୧୯) ସେ ନିଃସଙ୍କୋଚରେ ନିଜର ସଂସ୍କାରମୁକ୍ତ ଆତ୍ମାକୁ ଉନ୍ମୁକ୍ତ କରି ଦେଇଥିଲେ । ଏହି ଉପନ୍ୟାସର ନାୟିକାକୁ ଶାଶ୍ୱତ ନାରୀର ପ୍ରତିଭୂ ଓ ମାନବିକ ଆକର୍ଷଣର ଦ୍ରଷ୍ଟାକ ମନେ କରି,ସେ କହିଥିଲେ—"ମୃତ୍ୟୁ ସମ୍ବନ୍ଧରେ ଲୋକଙ୍କର ସାଧାରଣତଃ ଯେଉଁ ଧାରଣା ଅଛି, ମୋ ନିକଟରେ ତାହା ସତ୍ୟ ବୋଲି ମନେ ହୁଏ ନାହିଁ । ସୁତରାଂ ମୁଁ ଭାବେ, ଯେଉଁ ଦିନ ମୁଁ ଶେଷ ନିଃଶ୍ୱାସ ତ୍ୟାଗ କରିବି, ସେହି ଦିନ ମୋ ମାଆ ମୋତେ ତାହାର ଗର୍ଭର ନିଷ୍କଳୁଷ ଅନସ୍ତିତ୍ୱ ଭିତରକୁ ଫେରାଇ ନେବ ।" ତାଙ୍କର ଅନ୍ୟତମ ଉପନ୍ୟାସ "ଦେର ଷ୍ଟେପେନଉଲ୍‌ଫ"ର (୧୯୨୭) ନାୟକ ହାରି ହେଲର ବୁର୍ଜୋୟା ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି ଏବଂ ପ୍ରକୃତ ସଙ୍ଗୀତ, ଆନନ୍ଦ, କର୍ମ ଓ ପ୍ରେମର ସନ୍ଧାନରେ ବ୍ରତୀ ହୋଇ ଶେଷରେ ଏକମାତ୍ର ଶିଳ୍ପ ଭିତରେ ଆଶ୍ରୟ ପାଇଛି । "ନାରସିଜ ଉଣ୍ଡ ଗୋଲ୍‌ଡମଣ୍ଡ" (୧୯୩୦) ଉପନ୍ୟାସରେ ଅନ୍ତର୍ନିହିତ ଦାର୍ଶନିକ ତତ୍ତ୍ୱ ହେଉଛି, ପାପର ଅଭିଜ୍ଞତା ଲାଭ ନ କଲେ ପ୍ରକୃତ ମୁକ୍ତି ମିଳେ ନାହିଁ । ହେସଙ୍କର ପ୍ରତ୍ୟେକ ଉପନ୍ୟାସରେ ଦାର୍ଶନିକ ମତବାଦ ଓ ଉଚ୍ଚ ଆଦର୍ଶ ପ୍ରକଟିତ

ହୋଇଛି ଏବଂ ସେ ଜଣେ ଚିନ୍ତା ନାୟକ ବୋଲି ସ୍ୱୀକୃତ ହୋଇଛନ୍ତି । ସେ କହିଛନ୍ତି— "ମୁଁ ଉଦ୍ଦେଶ୍ୟମୂଳକ ଭାବରେ କିଛି ଲେଖେ ନାହିଁ । ମୁଁ ଗଣତନ୍ତ୍ରରେ ବିଶ୍ୱାସ କରେଁ । କିନ୍ତୁ ଯେଉଁ ଗଣତନ୍ତ୍ର ବ୍ୟକ୍ତିକୁ ସମ୍ମାନ ନ ଦେଖାଇ ଜନତାର ମନକୁ ପୀଡ଼ା ଦେଇ ଏକ ବୃହତ୍ ପିଣ୍ଡ ତିଆରି କରିବାକୁ ଚାହେଁ, ସେହି ଗଣତନ୍ତ୍ରକୁ ମୁଁ ମରଣ ଭଳି ଘୃଣାକରେ । ସାମାଜିକ ସମସ୍ୟା ମୋତେ ଆଦୌ ଆକୃଷ୍ଟ କରେ ନା । ବ୍ୟକ୍ତିର ସମସ୍ୟାକୁ ଅବଶ୍ୟ ମୁଁ ବଡ଼ କରି ଦେଖିଛି, କାରଣ ସମସ୍ୟା ମୁକ୍ତ ବ୍ୟକ୍ତିହିଁ ସମସ୍ୟାହୀନ ସମାଜ ପ୍ରତିଷ୍ଠା କରି ପାରେ ।" ଜଣେ ପ୍ରଧାନ ପୁରୋହିତର ଜୀବନକୁ କେନ୍ଦ୍ର କରି ୧୯୪୫ ସାଲରେ "ଦା'ସ ଗ୍ଲାସପାରଲେନ୍‌ସପିୟେଲ" ଉପନ୍ୟାସ ପ୍ରକାଶିତ ହେଲା ଏବଂ ପର ବର୍ଷ "ଗଭୀର ତତ୍ତ୍ୱ ସନ୍ଧିତ୍ସା ଓ ବିଶ୍ୱ ମାନବିକତାର ଉଚ୍ଚ ଚିନ୍ତାଧାରା ନିର୍ଭିକ ଭାବରେ ପ୍ରକାଶ କରିଥିବା" ଯୋଗୁଁ ତାହାଙ୍କୁ ନୋବେଲ ପୁରସ୍କାର ପ୍ରଦତ୍ତ ହେଲା । ବିଶ୍ୱ ସାହିତ୍ୟରେ ଏହା ଏକ ଅଦ୍ୱିତୀୟ ଉପନ୍ୟାସ, ଯେଉଁଥିରେ ଆଗାମୀ ଦୁଇ ହଜାର ବର୍ଷ ପରେ ଏକ କାଳ୍ପନିକ ରାଷ୍ଟ୍ରରେ ନୂତନ ସଭ୍ୟତାର ଅଭ୍ୟୁତ୍ଥାନ ହୋଇଛି ଏବଂ ଏହି ଅଭିନବ ସମ୍ପ୍ରଦାୟର ଧର୍ମମତ ଭିତରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶ୍ରେଷ୍ଠ ଚିନ୍ତାଧାରାର ସମନ୍ୱୟ ଘଟିଛି । ପ୍ରଧାନ ପୁରୋହିତ ଜୋସେଫର ମୃତ୍ୟୁ ପରେ ସ୍ୱରଚିତ କେତେଗୁଡ଼ିଏ କବିତା ଓ ତିନୋଟି ଗପ ମିଳିଥିଲା । ଗପରେ ସେ ନିଜର ତିନି ଜନ୍ମର ଆତ୍ମ ଚରିତ ଲେଖିଛି— ପ୍ରଥମ ଜନ୍ମରେ ଆଦିମ ସମାଜର ଗୁଣିଆ, ଦ୍ୱିତୀୟ ଜନ୍ମରେ ଖ୍ରୀଷ୍ଟାନ ସନ୍ନ୍ୟାସୀ ଓ ତୃତୀୟ ଜନ୍ମରେ ଭାରତର ରାଜପୁତ୍ର ଭାବରେ ।

ହେସଙ୍କର କବି ଖ୍ୟାତି ମଧ୍ୟ ଊଣା ନୁହେଁ । ତାଙ୍କର କବିତା ପ୍ରଧାନତଃ ସୁନ୍ଦରଧର୍ମୀ ଓ ରହସ୍ୟଧର୍ମୀ, ଯେଉଁଥିରେ ଗୂଢ଼ ତତ୍ତ୍ୱ କଥା

ପ୍ରଚ୍ଛନ୍ନ ରହିଛି । "କୁହୁଡ଼ି" କବିତାର ଅନ୍ତର୍ନିହିତ ଭାବ ହେଉଛି—"ଯେତେବେଳେ ଜୀବନର ସୂର୍ଯ୍ୟକୁ ଢାଙ୍କି ଦେଇ ମରଣର କୁହୁଡ଼ି ମାଡ଼ି ଆସିବ, ସେତେବେଳେ ଆମେ ହଠାତ୍ ଉପଲବ୍ଧି କରିବା ଯେ ଏତେ ଦିନ ଯେଉଁମାନଙ୍କ ସହିତ ବିତାଇଲେ ସେମାନଙ୍କ ଭିତରୁ କେହି ଆମ ସାଙ୍ଗରେ ଯିବେ ନାହିଁ, ଏବେ ଏକାକୀ ଯାତ୍ରା କରିବାକୁ ହେବ ।" ସମାଲୋଚକଙ୍କ ମତରେ, ଯୁଦ୍ଧୋତ୍ତର କାଳର ମନସ୍ତତ୍ତ୍ୱ-ବିଶ୍ଳେଷକ ଉପନ୍ୟାସରି ସାର୍ଥକ କୃତି ନିମନ୍ତେ ହେସ ପ୍ରଶଂସନୀୟ । ଜଣେ ମାର୍କିନ ପ୍ରଯୋଜକ-ନିର୍ଦ୍ଦେଶକ ଭାରତୀୟ ତାରକାମାନଙ୍କ ଦ୍ୱାରା "ସିଦ୍ଧାର୍ଥ"କୁ ଗତ ବର୍ଷ ଭାରତର ପୃଷ୍ଠଭୂମିରେ ଚଳଚ୍ଚିତ୍ରରେ ରୂପାୟିତ କରିଛନ୍ତି ।

କାଳ କ୍ରମେ ସ୍ରଷ୍ଟାଙ୍କୁ ଲୋକେ ଭୁଲି ଯାଆନ୍ତି, ମାତ୍ର ତାହାର ସୃଷ୍ଟି ବିଶ୍ୱ ବିଖ୍ୟାତ ହୋଇ ରହେ । "ଟମ କକାର କୁଟୀର"ର ଲେଖିକା ଶ୍ରୀମତୀ ହାରିୟେଟ ଏଲିଜାବେଥ ବୀଚର ଷ୍ଟୋଙ୍କର ଆଜି ଦୁନିଆରେ ସେହିପରି ଅବସ୍ଥା ହୋଇଛି । ହୁଏତ ଅନେକେ ତାଙ୍କର ନାମ ଜାଣନ୍ତି ନାହିଁ, ଅଥଚ ତାଙ୍କର ଅମର ଉପନ୍ୟାସ ପଢ଼ିଛନ୍ତି, ଅବା ସିନେମାରେ ଦେଖିଛନ୍ତି ।

ଆମେରିକାର ସାଧାରଣ ଗୃହସ୍ଥ ଲାଇମାନ ବୀଚରଙ୍କର ଝିଅ ହାରିୟେଟ ବିଦ୍ୟାଳୟରେ କିଛି ଲେଖାପଢ଼ା ଶିଖିଥିଲେ । ବାର ବର୍ଷ ବୟସରେ ସେ ପ୍ରସିଦ୍ଧ କବି ବାୟରନଙ୍କର ମୃତ୍ୟୁ ସମ୍ବାଦ ଶୁଣି ମନମରା ହୋଇ ନିର୍ଜନରେ ଏକା ଦିନ ବିତାଇବାକୁ ସୁଖ ପାଉଥିଲେ । ବାବାଙ୍କର ପୁଅ ଝିଅଙ୍କ ପ୍ରତି କଡ଼ା ନିର୍ଦ୍ଦେଶ ଥିଲା, ସ୍କଟଙ୍କର ଉପନ୍ୟାସ ଛଡ଼ା ଅନ୍ୟ କିଛି ଶସ୍ତା ବହି ପଢ଼ିବେ ନାହିଁ । ଦିନେ ହାରିୟେଟ କୋଇଲା ଘରେ ଅଳ୍ପନକ ଖଣ୍ଡିଏ "ଆରବ୍ୟ

ରଜର୍ସ” ପୁସ୍ତକ ଦେଖି ପାରି ଲୁଚାଇ ଲୁଚାଇ ତାହାକୁ ଶେଷ କଲେ । ତାହା ଦ୍ୱାରା ସେ ଏତେ ଅନୁପ୍ରାଣିତ ହେଲେ ଯେ ହାଣ୍ଡିଶାଳରେ ବସି ସେ ଗପସବୁ ନିଜେ ଲେଖିବାକୁ ଲାଗିଲେ । ହାଣ୍ଡିଶାଳର ଚାରି ଆଡ଼େ କଣ୍ଟା ଚାମଚ, ହାଣ୍ଡି କଡ଼େଇ, ଇତ୍ୟାଦି ଖେଳା ହୋଇ ରହିଥାଏ, ଆଉ ଛଅ-ସାତୋଟି ପୁଅ ଝିଅ ତାହାଙ୍କୁ ଘେରି ବସି ରହି ବାରମ୍ବାର ପଚାରୁ ଥାଆନ୍ତି— କଅଣ ଲେଖୁଛ ? କାହିଁକି ଲେଖୁଛ ?

ସିନସିନାଟିରେ ହାରିୟେଟଙ୍କର ବାପାଙ୍କ ସ୍କୁଲର ଶିକ୍ଷକ କେଲଭିନ ଷ୍ଟୋଙ୍କୁ ସେ ବିବାହ କରିଥିଲେ । ସେହି ସ୍କୁଲଟି କ୍ରୀତଦାସ ପ୍ରଥାର ବିରୋଧୀମାନଙ୍କର ହୋଇଥିବାରୁ, ସେମାନଙ୍କଠାରୁ ସେ କ୍ରୀତଦାସମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ସମ୍ବନ୍ଧରେ ବହୁତ ଖବର ପାଉଥିଲେ । ସେ କିଛି ଦିନ ଗୋଟିଏ ବଗିଚାରେ କଟାଇଥିଲେ, ଯେଉଁଠି କ୍ରୀତଦାସମାନଙ୍କ ଦ୍ୱାରା ଚାଷ କାମ କରା ହେଉଥିଲା । ତା ପରେ ତାଙ୍କର ସ୍ୱାମୀ ବାଉଡୁଇନ କଲେଜରେ ଶିକ୍ଷକତାର ଚାକିରି ପାଇବାରୁ, ସେ ସ୍ୱାମୀଙ୍କ ସହିତ ବାର୍ନସଉଇକକୁ ଚାଲିଗଲେ । ସେଠାରେ ହାରିୟେଟ ନାନା ସୂତ୍ରରୁ ଜାଣି ପାରିଲେ, କପରି ମାଲିକମାନେ ନିଗ୍ରୋ କ୍ରୀତଦାସମାନଙ୍କ ଉପରେ ଅକଥ୍ୟ ଅତ୍ୟାଚାର ଚଳାଇଛନ୍ତି ଏବଂ କ୍ରୀତଦାସ ପ୍ରଥା ମାଧ୍ୟମରେ ଭୟଙ୍କର ଅନ୍ୟାୟ, ପାପ ଓ ଅରାଜକତା ଚାଲିଛି । ତହିଁ ସେ ସ୍ଥିର କଲେ, ଆଉ ଚୁପ୍ ହୋଇ ବସି ରହିବେ ନାହିଁ, ନିଶ୍ଚୟ ଏହାର ଗୋଟିଏ କିଛି ପ୍ରତିକାରର ବ୍ୟବସ୍ଥା କରିବେ । କାଗଜ କଲମ ଧରି ସେ ଲେଖିବାକୁ ବସିଲେ— ଜଣେ ତିରିଶ ବର୍ଷର ଅଖ୍ୟାତା ଗୃହିଣୀ, ହୋଟହୋଟିଆ ଦେହେଲି, ମୁଣ୍ଡରେ ସିଧା ସିନ୍ଥି ଓ ବଡ଼ ଜୁଡ଼ା, ଗାଲର

ହାଡ଼ ଟିକିଏ ଉଚ୍ଚା, ବସାବସା ଆଖି, ପରିଧାନ ପାଦ ପର୍ଯ୍ୟନ୍ତ ଆବୃତ ଧଳା ଗାଉନ । ନିତ୍ୟ ହାଣ୍ଡିଶାଳର ଓ ଘରର ଯାବତୀୟ କାମ ସାରି, ସେ ଟେବୁଲ କଡ଼ରେ ଆସି ବସୁଥିଲେ ଏବଂ ଦୁଆତରେ କାଠି କଲମ ବୁଡ଼ାଇ ଖଣ୍ଡିକ ପରେ ଖଣ୍ଡିଏ କାଗଜ ଲେଖି ଚାଲିଥିଲେ । ଗୋଟିଏ ଘରର କୋଣରେ ନିଭୃତରେ ନୀରବରେ ବସି ସେ ଦୁର୍ଦ୍ଦଣ୍ଡ ପ୍ରବଳ ପ୍ରତାପୀ ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଏକକ ଅଭିଯାନ ଆରମ୍ଭ କଲେ । ୧୮୫୨ ସାଲରେ ଉପନ୍ୟାସଟି ପ୍ରଥମେ ପ୍ରକାଶିତ ହେଲା । ପ୍ୟାରିସର ଜନୋଟି ସମ୍ବାଦପତ୍ରରେ ପ୍ରଥମେ ଏହା ଧାରାବାହିକ ଭାବରେ ବାହାରିବା ସଙ୍ଗେ ସଙ୍ଗେ ସମଗ୍ର ୟୁରୋପରେ ଚହଳ ପଡ଼ିଗଲା ଏବଂ ବହୁ ଭାଷାରେ ମଧ୍ୟ ଅନୂଦିତ ହେଲା, କେବଳ ଓସ୍ୱେଲସରେ ତିନି ଥର ଛାପା ହେଲା । ଦେଖା ଗଲା, କେବଳ ବାଇବେଲ ଛଡ଼ା ଏତେ ଭାଷାରେ ଆଉ କୌଣସି ବହି ଛାପା ହୋଇ ନାହିଁ । ଟଲଷ୍ଟୟ ମତ ଦେଲେ — ଉପନ୍ୟାସଟି କଳାର ଏକ ଉଚ୍ଚ ସ୍ତରର ଜ୍ୱଳନ୍ତ ଉଦାହରଣ ।

ଆମେରିକାର ରାଷ୍ଟ୍ରପତି ଆବ୍ରାହାମ ଲିଙ୍କନ କହିଲେ — ଏହି ବହିଟି ଆମେରିକାରେ ଗୃହ ଯୁଦ୍ଧର ଏକମାତ୍ର କାରଣ ନ ହେଲେ ସୁଦ୍ଧା ଏକ ବିଶେଷ କାରଣ, ଏଥିରେ କିଛି ସନ୍ଦେହ ନାହିଁ । ଫଳରେ, କ୍ରୀତଦାସ ପ୍ରଥା ବେଆଇନ ଘୋଷିତ ହେଲା । ସମାଲୋଚକମାନେ ମନ୍ତବ୍ୟ କଲେ — ଏହା ତ ଗୋଟିଏ ସମାନ୍ୟ ଉପନ୍ୟାସ ନୁହେଁ, ପୃଥିବୀରେ ଏକ ଐତିହାସିକ ଘଟଣା ।

ଆଜି ହାରିୟେଟ ଇହ ଜଗତରେ ନାହାନ୍ତି ସତ, ମାତ୍ର ତାଙ୍କର ଚିର ସ୍ମରଣୀୟ କୃତି ସାରସ୍ୱତ ଗଙ୍ଗା ଘରେ ସୁଯତ୍ନରେ ସାଇତା

ହୋଇଛି । ତେବେ ଏଥିରୁ ଲେଖିକା ଜୀବଦ୍ଦଶାବସ୍ଥାରେ ତାଙ୍କର ଯଥାଯଥ ସ୍ୱୀକୃତି, ସମ୍ମାନ, ପ୍ରତିପତ୍ତି ଓ ଅର୍ଥ ଲାଭ କରିଥିଲେ । ପରିଣତ ବୟସରେ ସେ ଥରେ ଇଂଲଣ୍ଡକୁ ବୁଲି ଯାଇଥିଲେ । ସେତେବେଳେ ସ୍ୱୟଂ ମହାରାଣୀ ତଥା ଅଗଣିତ ନରନାରୀ ସେଠାରେ ତାହାଙ୍କୁ ସାଦର ଅଭ୍ୟର୍ଥନା ଜଣାଇଥିଲେ । କିନ୍ତୁ ତାଙ୍କର ଶେଷ ଜୀବନ ଅତ୍ୟନ୍ତ ଦୁଃଖଦାୟକ ଓ ମର୍ମସ୍ପର୍ଶୀ ବୋଲି କୁହାଯାଇ ପାରେ ।

ହିନ୍ଦୀ ସାହିତ୍ୟର ଯଶସ୍ୱୀ ଔପନ୍ୟାସିକ ଯଜ୍ଞ ଦତ୍ତ ଶର୍ମା ଭାରତୀୟଙ୍କ ନିକଟରେ ଅବଶ୍ୟ ଅପରିଚିତ ନୁହନ୍ତି । ତେଣୁ ତାହାଙ୍କ ସମ୍ବନ୍ଧରେ ଆଲୋଚନା ଏଠାରେ ନିଷ୍ପ୍ରୟୋଜନ ।

ଦେଖିବା ଚାଲନ୍ତୁ, ଆଉ କୋଠରୀରେ କି କି ରତ୍ନସବୁ ଅଛି ।

ଗାନ୍ଧି ଜୟନ୍ତୀ,
ଆଶ୍ୱିନ ୧୭, ୧୩୮୦
(୨, ଅକ୍ଟୋବର, ୧୯୭୨)

**ଲକ୍ଷ୍ମୀନାରାୟଣ ମହାନ୍ତି**

ହାରମେନ ହେସ

# ସିଦ୍ଧାର୍ଥ

## ୧

ସୌମ୍ୟ ଦର୍ଶନ ବ୍ରାହ୍ମଣ କୁମାର ସିଦ୍ଧାର୍ଥ ତାହାର ବନ୍ଧୁ ଗୋବିନ୍ଦ ସାଙ୍ଗରେ ଗୃହାଙ୍ଗନରେ, ରୌଦ୍ରାଲୋକିତ ନଦୀ କୂଳରେ ଏବଂ ଶାଳ ଓ ଡମିରି ଗଛର ଛାୟାରେ ବୁଲୁଥିଲା । ଆମ୍ବ ବଗିଚାରେ ଖେଳିଲା ବେଳେ, ମାଆର ଗୀତ ଓ ବାପାର ଅଧ୍ୟାପନା ଶୁଣି ତାହାର ଆଖି ସାମନାରେ ସତେ ଯେମିତି କାହାର ଛାୟା ବରାବର ଭାସି ଯାଉଥିଲା । ଇତି ମଧ୍ୟରେ ସେ ପଣ୍ଡିତମାନଙ୍କର ଆଲୋଚନା ସଭାରେ ଯୋଗ ଦେଇଥିଲା ଏବଂ କୁମ୍ଭକ ସାହାଯ୍ୟରେ ଶବ୍ଦ ଶ୍ରେଷ୍ଠ ଓଁ ନିଃଶବ୍ଦରେ ଉଚ୍ଚାରଣ କରିବାର କୌଶଳ ଆୟତ୍ତ କରିଥିଲା । ଅବିନଶ୍ବର ଆତ୍ମାକୁ ନିଜ ସତ୍ତାର ଗଭୀରତାରେ ଉପଲବ୍ଧି କରିବାର ଅଲୌକିକ କ୍ଷମତା ସେ ଲାଭ କରିଥିଲା ।

ପୁତ୍ରର ଧୀ ଶକ୍ତି ଓ ଜ୍ଞାନ ତୃଷା ଦେଖି ପିତାର ହୃଦୟ ଆନନ୍ଦରେ ପୂରି ଯାଉଥିଲା । ସେ ମନେ ମନେ କଳନା କରୁଥିଲା, ତାହାର ପୁଅ ଦିନେ ବଡ଼ ପଣ୍ଡିତ ହୋଇ ଦୁନିଆରେ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ଭାବରେ ଖ୍ୟାତି ଲଭିବ । ତାହାର ଚାଲି ଚଳନ ଓ ଢଙ୍ଗଢାଙ୍ଗ ଦେଖି ମାଆର ଅନ୍ତର ଗର୍ବରେ ଫୁଲି ଯାଉଥିଲା । ନଗରର

ରାଜପଥରେ ଗଲା ବେଳେ ସିଦ୍ଧାର୍ଥର ଉନ୍ନତ ଲଲାଟ, ରାଜୋଚିତ ନୟନ ଓ ସୁଡୌଲ ଗଢ଼ଣ ଦେଖି ବ୍ରାହ୍ମଣ କୁମାରୀମାନଙ୍କର ଚିତ୍ତରେ ପ୍ରେମର ଅପୂର୍ବ ସ୍ପନ୍ଦନ ଜାତ ହେଉଥିଲା ।

କିନ୍ତୁ ବନ୍ଧୁ ବ୍ରାହ୍ମଣ କୁମାର ଗୋବିନ୍ଦ ପରି ଆଉ କେହି ସିଦ୍ଧାର୍ଥକୁ ଏତେ ବେଶି ଭଲ ପାଉ ନ ଥିଲେ । ଗୋବିନ୍ଦ ଅହରହ ଭାବୁଥିଲା, ସେ ନିଜର ମହୀତ ହୃଦୟ ବନ୍ଧୁ ସିଦ୍ଧାର୍ଥର ଅନୁଗାମୀ ହେବ ଜଣେ ପ୍ରକୃତ ବନ୍ଧୁ, ସାଥୀ, ଭୃତ୍ୟ ଓ ଦେହ ରକ୍ଷୀ ଭାବରେ ଏବଂ ଛାୟା ପରି ଅନବରତ ତାହା ସାଙ୍ଗରେ ରହିଥିବ ।

ସମସ୍ତେ ସିଦ୍ଧାର୍ଥକୁ ଭଲ ପାଉଥିଲେ । କିନ୍ତୁ ସିଦ୍ଧାର୍ଥର ମନରେ କେବେ ସୁଖ ନ ଥିଲା । ଗୋଟାଏ ଅତୃପ୍ତିର ବୀଜ ତାହାର ମନ ଭିତରେ ଅଙ୍କୁରିତ ହେଉଥିଲା । ସେ ଉପଲବ୍ଧି କଲା, ପିତାମାତାଙ୍କର ସ୍ନେହ କି ବନ୍ଧୁ ବାନ୍ଧବଙ୍କର ଶ୍ରଦ୍ଧା ତାହାକୁ ଆନନ୍ଦ ଓ ଶାନ୍ତି ଦେବ ନାହିଁ । ସୁତରାଂ ତାହାର ମନରେ ସଂଶୟ ଦେଖା ଦେଲା । ଜ୍ଞାନୀ ଆଚାର୍ଯ୍ୟମାନଙ୍କ ନିକଟରୁ ସେ ଅବଶ୍ୟ ଜ୍ଞାନ ଲାଭ କଲା, ମାତ୍ର ସେଥିରେ ସେ ଆଦୌ ପରିତୃପ୍ତ ହେଲା ନାହିଁ, ତାହାର ଆତ୍ମା ଶାନ୍ତ ହେଲା ନାହିଁ କି ହୃଦୟର ଶୃଙ୍ଖଳା ଦୂରୀଭୂତ ହେଲା ନାହିଁ । ସେ ନିଜକୁ ପଚାରିଲା —ପ୍ରକୃତରେ ପ୍ରଜାପତି ଏହି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି, ନା ପରମାତ୍ମା ପରମ ବ୍ରହ୍ମ ? ଦେବତାମାନଙ୍କୁ ପୂଜା କରି ଲାଭ କଅଣ ? ଏକମାତ୍ର ପରମାତ୍ମାଙ୍କ ବ୍ୟତୀତ ଆଉ କାହା ଉଦ୍ଦେଶ୍ୟରେ ଯଜ୍ଞ କରାଯାଏ କି ? ଯଦି ଆମ ଅନ୍ତରର ଗଭୀରତମ ସ୍ଥଳରେ ପରମାତ୍ମାଙ୍କର ସାକ୍ଷାତ ନ ମିଳେ, ତାହା ହେଲେ ଭଗବାନ କେଉଁଠି ଅଛନ୍ତି ? ଆତ୍ମାକୁ ଉପଲବ୍ଧି କରିବାର ସୁଗମ ସରଳ ପଥ କାହିଁ ? କେହି ସେହି ପଥ ନିର୍ଦ୍ଦେଶ କରି ନାହାନ୍ତି । ଉପନିଷଦରେ ଉଲ୍ଲିଖ ଅଛି ସତ, ନିଦ୍ରାରେ ଆମର ଦେହ ଶୁଏ, ଆଉ ଆତ୍ମା

ଜାଗ୍ରତ ହୁଏ । କିନ୍ତୁ ଏପରି ଘାଷା କାହାର ଅଛି, ଯେ ନିଦ୍ରାବସ୍ଥାରେ ଆତ୍ମାକୁ ଲଭ କରି ଜାଗରଣରେ, ଜୀବନରେ, ବାକ୍ୟରେ, କାର୍ଯ୍ୟରେ ସବୁଠି ତାହାକୁ ଧରି ରଖି ପାରେ ? ନିଜର ଚେଖିର ସତ୍ତ୍ୱ ଭିତରେ ସବୁ କାଣ୍ଡର ମୂଳ କାରଣ ନିହିତ ! ତାହାକୁହିଁ ଆୟତ୍ତ କରିବାକୁ ହେବ ।

ସିଦ୍ଧାର୍ଥ ଛାନ୍ଦୋଗ୍ୟ ଉପନିଷଦର ଶ୍ଳୋକ ଆବୃତ୍ତି କରୁଥିଲ— ଯେ ବ୍ରହ୍ମହିଁ ସତ୍ୟ ବୋଲି ଜାଣନ୍ତି, ସେ ନିତ ବ୍ରହ୍ମଲୋକ ଗମନ କରନ୍ତି । ମାତ୍ର ସେ ଯେଉଁ ପଣ୍ଡିତମାନଙ୍କୁ ଜାଣିଥିଲ, ସେମାନଙ୍କ ଭିତରୁ କେହି ସମ୍ପୂର୍ଣ୍ଣ ଭାବରେ ବ୍ରହ୍ମଲୋକରେ ପହଞ୍ଚି ପାରି ନ ଥିଲ ।

ସିଦ୍ଧାର୍ଥ ବନ୍ଧୁକୁ କହିଲ—ଗୋବିନ୍ଦ, ଚାଲ, ବରଗଛର ଛାଇରେ ଟିକିଏ ବସିବା ଏବଂ କିଛି କ୍ଷଣ ଧ୍ୟାନ କରିବା ।

ତହୁଁ ଦୁହେଁ ବରଗଛ ତଳେ ଯାଇ ବସିଲେ । ଗୋବିନ୍ଦ ଓଁ ଉଚ୍ଚାରଣ କରନ୍ତେ, ସିଦ୍ଧାର୍ଥ ଧୀରେ ଧୀରେ ଆବୃତ୍ତି କଲ—ଓଁ ହେଉଛି ଧନୁ, ଜୀବାତ୍ମା ଶର, ଆଉ ବ୍ରହ୍ମ ଲକ୍ଷ୍ୟ । ନିର୍ଭୁଲ ଭାବରେ ଲକ୍ଷ୍ୟ ଭେଦ କରି ପାରିଲେ ଶର ଓ ଲକ୍ଷ୍ୟର ମିଳନ ଘଟିବ, ଅର୍ଥାତ୍ ଜୀବାତ୍ମା ବ୍ରହ୍ମ ସହିତ ଅଭିନ୍ନ ହେବ ।

ସନ୍ଧ୍ୟା ! ଆହ୍ନିକର ସମୟ । ଗୋବିନ୍ଦ ଠିଆ ହେଲା, ସିଦ୍ଧାର୍ଥର ନାମ ଧରି ଡାକିଲା । ସିଦ୍ଧାର୍ଥ ଧ୍ୟାନମଗ୍ନ ହୋଇ ଅପଲକ ଦୃଷ୍ଟିରେ ବହୁ ଦୂରକୁ ଅନାଇ ରହିଥିଲ । ଧ୍ୟାନ ଭାଙ୍ଗିଲା ଉତ୍ତାରୁ ସେ ଗୋବିନ୍ଦକୁ କହିଲ— ଶୁଣ ବନ୍ଧୁ, କାଲି ସକାଳେ ସିଦ୍ଧାର୍ଥ ସନ୍ନ୍ୟାସୀମାନଙ୍କ ଦଳରେ ଯୋଗ ଦେବ ।

ଏହା ଶୁଣି ଗୋବିନ୍ଦର ମୁଖ ଫିଟା ପଡ଼ିଗଲା । ସେ ପଚାରିଲା —କିନ୍ତୁ ତୁମର ବାପା କିଏଣ ଅନୁମତି ଦେବେ ?

ତନ୍ଦ୍ରା ଜଡ଼ିତ ନୟନରେ ବନ୍ଧୁକୁ ଅନାଇ ସିଦ୍ଧାର୍ଥ ଧୀରେ ଧୀରେ କହିଲେ— ଗୋବିନ୍ଦ, କାଲି ସକାଳେ ମୁଁ ସନ୍ନ୍ୟାସ ଗ୍ରହଣ କରିବି । ଏ ବିଷୟରେ ଆଉ କିଛି ଆଲୋଚନା କରିବାକୁ ଚାହେଁ ନା ।

ସିଦ୍ଧାର୍ଥର ପିତା କୁଶାସନରେ ବସି ଜପ କରୁଥିଲେ । ସେ ପିତାଙ୍କ ପଛରେ ଆସି ଠିଆ ହେଲେ । ବ୍ରାହ୍ମଣ ପଚାରିଲେ— କ'ଣ କହୁଛ, ସିଦ୍ଧାର୍ଥ ?

ସିଦ୍ଧାର୍ଥ ଜବାବ ଦେଲେ— ପିତା, ଆପଣଙ୍କର ଅନୁମତି ମିଳିଲେ ମୁଁ କାଲି ଗୃହ ତ୍ୟାଗ କରି ସନ୍ନ୍ୟାସୀମାନଙ୍କ ଦଳରେ ଯୋଗ ଦେବି ।

ଆକାଶରେ ନକ୍ଷତ୍ରମାନେ ନୂତନ ନକ୍ସା ରଚନା କରୁଥିଲେ । ବ୍ରାହ୍ମଣ ବହୁ କ୍ଷଣ ନୀରବରେ ବସିରହି କହିଲେ— ମୋର ଅନ୍ତର ଅସନ୍ତୋଷରେ ପୂର୍ଣ୍ଣ ହୋଇଛି । ଦ୍ୱିତୀୟ ବାର ତୁମେ ମୋତେ ଏପରି ଅନୁରୋଧ କରିବ ନାହିଁ ।

ବ୍ରାହ୍ମଣ ଆସନରୁ ଉଠିଲେ । ସିଦ୍ଧାର୍ଥ ନୀରବରେ ଯୁକ୍ତ କରରେ ଠିଆ ହୋଇଥିଲେ ।

ପିତା ପଚାରିଲେ—କାହିଁକି ଅପେକ୍ଷା କରିଛ ?

ସିଦ୍ଧାର୍ଥ ବିନୀତ କଣ୍ଠରେ ଜବାବ ଦେଲେ— ଆପଣ ତାହା ଜାଣନ୍ତି ।

ବ୍ରାହ୍ମଣ ରୁଷ୍ଟ ଚିତ୍ତରେ ଚାଲିଗଲେ । ନିଦ୍ରାର ସମୟ ହୋଇଥିଲା, ସେ ବିଛଣାରେ ଶୋଇ ପଡ଼ିଲେ । ମାତ୍ର ତାହାଙ୍କୁ ନିଦ ମାଡ଼ିଲା ନାହିଁ । ଶଯ୍ୟା ତ୍ୟାଗ କରି ସେ କିଛି କ୍ଷଣ ଏପାଖ ସେପାଖ ହୋଇ ଘରୁ ବାହାରକୁ ଆସିଲେ, ଆଉ ଝରକା ବାଟେ ଦେଖିଲେ, ସିଦ୍ଧାର୍ଥ ପଥର ମୂର୍ତ୍ତି ପରି ଠିଆ ହୋଇଛି । ସେ ଅନ୍ତରରେ ବେଦନା ବୋଧ କଲେ, ଶଯ୍ୟାକୁ ଫେରି ଯାଇ ଶୋଇ ପଡ଼ିଲେ । ତଥାପି ନିଦ ହେଲା ନାହିଁ, କିଛି ସମୟ ପରେ ସେ ପୁଣି ଦେଖିଲେ, ସିଦ୍ଧାର୍ଥ ଠିକ୍ ସେହିପରି ଠିଆ ହୋଇଛି ।

ରାତର ଶେଷ ପ୍ରହରରେ ବ୍ରାହ୍ମଣ ପୁଣି ଦେଖିଲେ, ତାଙ୍କର ପୁତ୍ର ସେମିତି ଠିଆ ହୋଇ ରହିଛି । ପଚାରିଲେ— ସିଦ୍ଧାର୍ଥ, କାହିଁକି ତୁମେ ଏଠାରେ ଅପେକ୍ଷା କରିଛ ?

ତାହା ତ ଆପଣ ଜାଣନ୍ତି ।

ଭୋର ହେବ, ଦିନ ଗଡ଼ିଯିବ, ସନ୍ଧ୍ୟା ପର୍ଯ୍ୟନ୍ତ କଅଣ ତୁମେ ଠିଆ ହୋଇଥିବ ?

ହଁ ।

ତୁମେ କ୍ଳାନ୍ତ ହେବ ନାହିଁ ?

ନା ।

ତୁମର ମୃତ୍ୟୁ ହେବ ।

ହୋଇ ପାରେ ।

ମୃତ୍ୟୁ କଅଣ ପିତାର ଆଦେଶ ପାଳନ ଠାରୁ ବରଣୀୟ ତୁମ ନିକଟରେ ?

ସିଦ୍ଧାର୍ଥ ତ କେଉଁ ଦିନ ପିତାଙ୍କର ଅବାଧ ହୋଇ ନାହିଁ ।

ତାହା ହେଲେ ତୁମେ ସଂକଳ୍ପ ତ୍ୟାଗ କଲ ?

ପିତାଙ୍କର ଆଦେଶ ସିଦ୍ଧାର୍ଥ ନିଶ୍ଚୟ ପାଳନ କରିବ ।

ପ୍ରଭାତର ପ୍ରଥମ କିରଣ ଘରେ ପ୍ରବେଶ କଲା । ବ୍ରାହ୍ମଣ ଦେଖିଲେ, ସିଦ୍ଧାର୍ଥର ଆଣ୍ଠୁ ଟିକିଏ ଥରୁଛି, କିନ୍ତୁ ତାହାର ମୁଖ ଅଚଞ୍ଚଳ ଏବଂ ଚକ୍ଷୁର ଦୃଷ୍ଟି ବହୁ ଦୂରରେ ନିବଦ୍ଧ ରହିଛି । ତହୁଁ ସେ ବୁଝି ପାରିଲେ, ତାଙ୍କର ପୁତ୍ର ଆଉ ଏହି ଘରେ ରହି ପାରିବ ନାହିଁ ।

ବ୍ରାହ୍ମଣ ପୁଅର କାନ୍ଧରେ ହାତ ରଖି କହିଲେ— ବେଶ୍ ଭଲ, ତୁମେ ସନ୍ନ୍ୟାସ ଗ୍ରହଣ କର । ଯଦି ବଣରେ ସେହି ପରମାନନ୍ଦ ଲାଭ କର, ତାହା ହେଲେ ମୋତେ କିଛି ଭାଗ ଦେଇଯିବ । ଯଦି ନ ପାଅ, ତାହା

ହେଲେ ଏଠାକୁ ଫେରି ଆସିବ । ଆମେ ପୁଣି ଏକାଠି ବେଦ ଆଲୋଚନା କରିବା । ଯାଅ, ତୁମର ମାଆଙ୍କୁ ପ୍ରଣାମ କରି ଜଣାଇ ଦିଅ, ତୁମେ କେଉଁଠାକୁ ଯାଉଛ । ମୋର ପ୍ରାତଃ ସ୍ନାନର ସମୟ ହେଲା, ମୁଁ ନଦୀକୁ ଯାଉଛି ।

ବ୍ରାହ୍ମଣ ଚାଲିଗଲେ । ଦୀର୍ଘ କାଳ ସ୍ଥାଣୁ ପରି ଠିଆ ହୋଇ ଥିବାରୁ ପ୍ରଥମ ପାଦ ପକାଇବାକୁ ଉଦ୍‌ଯୋଗ କରିବାରୁ ସିଦ୍ଧାର୍ଥର ଦେହ ଦୋହଲିଲା । ନିଜକୁ ସଂଯତ କରି ପିତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ସେ ମାଆଙ୍କ ପାଖକୁ ଗଲା ।

ପ୍ରତ୍ୟୁଷର ପ୍ରାଗ୍‌ଅନ୍ଧକାରରେ ସିଦ୍ଧାର୍ଥ ଧୀରେ ଧୀରେ ଅବଶ ପାଦ ପକାଇ ନିଦ୍ରିତ ନଗର ତ୍ୟାଗ କରି ଚାଲିଲା । ନଗରର ଶେଷ କୁଟୀରରୁ ଗୋଟିଏ ଛାୟା ମୂର୍ତ୍ତି ବାହାରି ଆସି ଅଭିଯାତ୍ରୀର ସାଥି ହେଲା ।

ମୃଦୁ ହସି ସିଦ୍ଧାର୍ଥ ପଚାରିଲା— ତୁମେ ଆସିଲ ?

ହଁ, ମୁଁ ଆସିଛି— ପରିତୃପ୍ତ କଣ୍ଠରେ ଗୋବିନ୍ଦ ଜବାବ ଦେଲା ।

୨

ସେହି ମଧ୍ୟାହ୍ନରେ ସେମାନେ ସାଧୁମାନଙ୍କର ଦଳରେ ମିଶିଲେ ।

ସିଦ୍ଧାର୍ଥ ଖଣ୍ଡିଏ କୌପୀନ ଓ ଗେରୁଆ ଅଙ୍ଗାବରଣ ରଖି ତାହାର ସବୁ ଲୁଗାପଟା ବାଣ୍ଟି ଦେଲା । ସେ ଦିନରେ ଥରେ ମାତ୍ର ଖାଇଲା । ତା ପରେ ତାହାର ଉପବାସ ଆରମ୍ଭ ହେଲା— ପ୍ରଥମେ ଚଉଦ ଦିନ, କ୍ରମେ କ୍ରମେ ବଢ଼ି ବଢ଼ି ଅଠେଇଶ ଦିନ । ତାହାର

ଗାଲରୁ ଓ ପାଦରୁ ମାଂସ ନିଶ୍ଚିହ୍ନ ହେଲା, ବଡ଼ ବଡ଼ ବହିର୍ଗତ ଚକ୍ଷୁରେ ଅଦ୍ଭୁତ ସ୍ୱପ୍ନର ଗ୍ଲାୟା ଭାସିଲା, କ୍ଷୀଣ ଅଙ୍ଗୁଳିର ନଖ ଦୀର୍ଘ ହେଲା, ଚିବୁକରେ ଦେଖା ଦେଲା ଶୁଖିଲା ଖେଣ୍ଟା ଖେଣ୍ଟା ଦାଢ଼ି । ଜନ ଗହଳି ରାସ୍ତାରେ ଗଲା ବେଳେ ବହୁ ପ୍ରକାରର ଦୃଶ୍ୟ ଦେଖି, ସେ ମନେ ମନେ ଭାବିଲା— ଏଥିରୁ କେଉଁଟା ସତ୍ୟ ନୁହେଁ, ଆନନ୍ଦ ଓ ସୌନ୍ଦର୍ଯ୍ୟ କେବଳ ଇନ୍ଦ୍ରିୟର ମାୟା, କ୍ଷଣେ ସବୁ ଧ୍ୱଂସ ହେବ, ଜୀବନ ହିଁ ଅବିଚ୍ଛିନ୍ନ ବେଦନା ମାତ୍ର ।

ସିଦ୍ଧାର୍ଥର ଏକମାତ୍ର ଲକ୍ଷ୍ୟ ହେଲା ଶୂନ୍ୟ ହୋଇଯିବା, ତୃଷ୍ଣା ଆକାଙ୍କ୍ଷା ସ୍ୱପ୍ନ ଆନନ୍ଦ ଓ ବେଦନାରୁ ମୁକ୍ତି ପାଇବା, ଏବଂ ଅହଂଭାବକୁ ଦମନ କରି ନିରାସକ୍ତ ହୃଦୟରେ ଶାନ୍ତ ଓ ବିଶୁଦ୍ଧ ଚିନ୍ତାର ଅଭିଜ୍ଞତା ଅର୍ଜନ କରିବା ।

ତୃଷ୍ଣା ଓ ବେଦନା ଲୋପ ନ ହେବା ଯାଏ ପ୍ରଖର ରୌଦ୍ରରେ ସିଦ୍ଧାର୍ଥ ନୀରବରେ ଠିଆ ହୋଇ ରହୁଥିଲା । ଏପରିକି, ସେ ବର୍ଷାରେ ମଧ ଠିଆ ହେଉଥିଲା, ପ୍ରଚଣ୍ଡ ହେମାଳରେ ତାହାର ଅଙ୍ଗ ପ୍ରତ୍ୟଙ୍ଗ ଶାନ୍ତ ହୋଇ ସ୍ପର୍ଶ ଓ ଅନୁଭୂତିର ବନ୍ଧନରୁ ମୁକ୍ତ ପାଉଥିଲା । ସିଦ୍ଧାର୍ଥ କଣ୍ଟକାସନରେ ଅଟଳ ଅଚଞ୍ଚଳ ହୋଇ ବସୁଥିଲା, ରକ୍ତ ଝରିବା ଓ କଣ୍ଟା ବିନ୍ଧିବାର ବେଦନା ଦୂର ନ ହେବା ପର୍ଯ୍ୟନ୍ତ । ସେ ପ୍ରାଣାୟାମରେ ପ୍ରାପ୍ୟ ସଫଳତା ଲାଭ କଲା ।

ବୟୋଜ୍ୟେଷ୍ଠ ସାଧୁର ଉପଦେଶ ଅନୁଯାୟୀ ସିଦ୍ଧାର୍ଥ ଧ୍ୟାନ ଓ ଆତ୍ମ ନିଗ୍ରହ ଶିକ୍ଷା କଲା । କ୍ଷଣେ ସିଦ୍ଧାର୍ଥର ଆତ୍ମା ଯାଇ ଗୋଟିଏ ବଗ ଭିତରେ ପ୍ରବେଶ କରି ବଣ ପାହାଡ଼ରେ ଉଡ଼ି ବୁଲି ମାଛ ଖାଇଲା । ତା ପରେ ତାହାର ମୃତ୍ୟୁ ହୁଅନ୍ତେ ନଦୀ କୂଳରେ ପଡ଼ିଥିବା ଗୋଟିଏ ମଲା ଶିଆଳର ଦେହରେ ସିଦ୍ଧାର୍ଥର ଆତ୍ମା ପଶିଲା ଏବଂ ତାହାର ଦେହ ଧୂଳିରେ ମିଳାଇ ଗଲାରୁ, ଜୀବନ ଚକ୍ରର ବେଦନାମୟ

ଅଭିଜ୍ଞତା ଲାଭ କରି ମୃତ୍ୟୁ ପବନ ଓ ଧୂଳି ଭିତର ଦେଇ ତାହାରି ଆତ୍ମା ଫେରି ଆସିଲା । ନବ ନବ ଶିକାରର ଆକାଙ୍କ୍ଷା ଧରି ସେ ଅପେକ୍ଷା କଲା ଏକ ବିରାଟ ଶୂନ୍ୟତାର କୂଳରେ, ଯେଉଁଠାରେ ଜୀବନ ଚକ୍ରର ବିବର୍ତ୍ତନ ବନ୍ଦ ହୋଇଛି । ସେ ଇନ୍ଦ୍ରିୟକୁ ଦମନ କଲା, ସ୍ମୃତିର ସଞ୍ଚୟକୁ ଧ୍ୱଂସ କଲା, ବିଭିନ୍ନ ରକମର ଜୀବ ଜନ୍ତୁ କାଠ ପଥରର ରୂପ ଧରିଲା ଏବଂ ପ୍ରତି ଥର ଜୀବନ ଚକ୍ରର ଦୋଳାରେ ଝୁଲି ଝୁଲି ନିଜର ସତ୍ତାକୁ ଫେରି ଆସିଲା ।

ସିଦ୍ଧାର୍ଥ ସାଧୁମାନଙ୍କ ଠାରୁ ଅନେକ କଥା ଶିଖିଲା, ନିଜକୁ ଲୋପ କରିଦେବାର ବହୁ ଉପାୟ ଜାଣିଲା, ସ୍ୱେଚ୍ଛାରେ କ୍ଲେଶ ବରଣ କଲା, ଆଉ ବେଦନା ଜୟ କଲା । ପୁଣି ଧ୍ୟାନ ଦ୍ୱାରା ସେ ନିଜର ସତ୍ତା ଲୋପ କରିବାକୁ ସଚେଷ୍ଟ ହେଲା । ହଜାରେ ଥର ସେ ନିଜର ସତ୍ତା ହରାଇଲା ଏବଂ ଦୀର୍ଘ ଦିନ ଯାଏ ଅବିଦ୍ୟମାନତାରେ ଆତ୍ମ-ଗୋପନ କଲା । ପରେ ସେ ପୁଣି ନିଜ ଭିତରକୁ ଫେରି ଆସିଲା ।

ଗୋବିନ୍ଦ ଛାୟା ପରି ସିଦ୍ଧାର୍ଥର କଡ଼େ କଡ଼େ ରହିଥିଲା । ସେ ମଧ୍ୟ ସିଦ୍ଧାର୍ଥର ପଥ ଅନୁସରଣ କରିବାକୁ ଚେଷ୍ଟା କରୁଥିଲା । ସେମାନେ ଖୁବ୍ କମ କଥା ହେଉଥିଲେ ଏବଂ ବେଳେ ବେଳେ ଭିକ୍ଷା ପାଇଁ ଗ୍ରାମକୁ ଯାଉଥିଲେ ।

ଦିନେ ବାଟରେ ସିଦ୍ଧାର୍ଥ ପଚାରିଲା — ଗୋବିନ୍ଦ, ତୁମେ କଅଣ ମନେ କରୁଛ ? ଆମେ ଟିକିଏ ଆଗେଇଲେଣି ତ ?

ଗୋବିନ୍ଦ ଜବାବ ଦେଲା — ଆମେ ବହୁତ କିଛି ଶିଖିଲୁଣି । ତୁମେ ପ୍ରତ୍ୟେକ ପାଠ ଶୀଘ୍ର ଶିଖି ପାରୁଛ । ତୁମେ ନିଶ୍ଚୟ ଅଚିରେ ଜଣେ ବଡ଼ ତପସ୍ୱୀ ହେବ ।

ସିଦ୍ଧାର୍ଥ କହିଲା— ମୋର ତାହା ମନେ ହେଉ ନାହିଁ, ବନ୍ଧୁ । ସନ୍ନ୍ୟାସୀମାନଙ୍କ ଠାରୁ ମୁଁ ଅଦ୍ୟାବଧି ଯାହା ଶିଖିଛି, ତାହା ଆହୁରି

ସହଜରେ ଓ ଶୀଘ୍ର ଯେ କୌଣସି ଗଣିକା, ମୂଲିଆ ଓ ଜୁଆଡ଼ି ଦ୍ୱାରୁ ଶିଖି ପାରି ଥାଆନ୍ତି ।

ତୁମେ କଅଣ ତାମସା କରୁଛ ? ଯେହି ହତଭାଗାମାନଙ୍କ ଠାରୁ ତୁମେ ପ୍ରାଣାୟାମ ଓ ତପସ୍ୟା ଶିଖି ଥାଆନ୍ତ କପରି ?

ସିଦ୍ଧାର୍ଥ ମୃଦୁ କଣ୍ଠରେ କହିଲି—ତପସ୍ୟା କଅଣ ? ଦେହ ତ୍ୟାଗର ଅର୍ଥ କଅଣ ? ଉପବାସ ଓ ପ୍ରାଣାୟାମରେ କଅଣ ହୁଏ ? ଏସବୁ ହେଉଛି କେବଳ ନିଜ ନିକଟରୁ ସାମୟିକ ପଳାୟନର ଉପାୟ । ସୁରା ପାନ ଯେପରି ଜୀବନରେ ସାମୟିକ ପରିତ୍ରାଣ ଆଣେ, ଆମେ ଦୀର୍ଘ କାଳ କଠୋର ସାଧନା ଦ୍ୱାରା ଦେହର ବନ୍ଧନରୁ ଠିକ୍ ସେହି ଅନୁଭୂତି ଲାଭ କରୁ ।

ମାତ୍ର ଏହି ଉପାୟରେ ଜ୍ଞାନ ବଢ଼େ ନାହିଁ, କି ନୂତନ ବିଦ୍ୟା ଶିଖି ହୁଏ ନାହିଁ— ଗୋବିନ୍ଦ ମନ୍ତବ୍ୟ କଲି ।

ସିଦ୍ଧାର୍ଥ ଟିକିଏ ହସିଲି— ମୁଁ ଏ କଥା ଜାଣେ । ଆଚ୍ଛା ଗୋବିନ୍ଦ, ଆମେ ଠିକ୍ ବାଟରେ ଯାଉଛନ୍ତି ତ ? ଆମେ ଜ୍ଞାନ ଲାଭ କଲେଣି, ନା ସେହି ଗୋଲକଧନ୍ଦାରେ ଘୂରି ମରୁଛେନ୍ତି ?

ଗୋବିନ୍ଦ ଆଶ୍ୱାସନା ଦେଲି— ଆମେ ଅନେକ ଶିଖିଛୁ ସତ, ତଥାପି ଆମର ଆହୁରି ତେର୍ ଶିଖିବାରି ଅଛି । ଆମେ ଗୋଲ୍କଧନ୍ଦାରୁ ବାହାରି ଯାଇ ଉପରକୁ ଉଠୁଛୁଁ ।

ସିଦ୍ଧାର୍ଥ ପଚ୍ଚରିଲି—ଆମର ବୟୋଜ୍ୟେଷ୍ଠ ଆଶ୍ରମୀଙ୍କ ବୟସ କେତେ ?

ପ୍ରାୟ ଷାଠିଏ ବର୍ଷ ହେବ— ଗୋବିନ୍ଦ ଜବାବ ଦେଲି ।

ସେ ଏଯାଏ ନିର୍ବାଣ ଲାଭ କରି ପାରି ନାହାନ୍ତି । ତାଙ୍କର ବୟସ ବଢ଼ିବ । ଆମେ ବି ତାହାଙ୍କ ପରି ବୁଢ଼ା ହେବା । ସେ କି ଆମେ କେହି ନିର୍ବାଣ ଲାଭ କରି ପାରିବା ନାହିଁ । ଖାଲି

କେତେ ଗୁଡ଼ିଏ ଗୁରୁଙ୍କ ଶିଖି ଆମେ ନିଜକୁ ପ୍ରତାରଣା କରୁଛୁ, ମାତ୍ର ଏଯାଏଁ ଅସଲ ବସ୍ତୁର ସନ୍ଧାନ ପାଇ ନାହୁଁ । କହିଲ, ଯାହା ପାଇଁ ଏତେ ଧ୍ୟାନ ଓ ଧାରଣା, ସେହି ପଥର ସନ୍ଧାନ କିଏ ପାଇଛି ?

ଗୋବିନ୍ଦ ସଙ୍ଗେ ସଙ୍ଗେ କହି ପକାଇଲା— ନା, ନା, ଏମିତି ଭୟଙ୍କର କଥା କୁହ ନା, ସିଦ୍ଧାର୍ଥ । ଏତେ ପଣ୍ଡିତ, ବ୍ରାହ୍ମଣ, ଶ୍ରମଣ, ସାଧୁ, ସନ୍ନ୍ୟାସୀ ଦେବତାଙ୍କୁ ଆରାଧନା କରୁଛନ୍ତି, ସେମାନେ କଅଣ ସେହି ପଥ ଖୋଜି ପାଇବେ ନାହିଁ ?

ସିଦ୍ଧାର୍ଥ ବିଦ୍ରୂପ କଲା— ଏତେ ଦିନ ଯାଏ ମୁଁ ଯେଉଁ ପଥରେ ତୁମ ସାଙ୍ଗରେ ଚାଲିଥିଲି, ଅଚିରେ ମୋତେ ତାହା ତ୍ୟାଗ କରିବାକୁ ପଡ଼ିବ । ସନ୍ନ୍ୟାସୀମାନଙ୍କ ପଥ ଅନୁସରଣ କରି ମୋର ଜ୍ଞାନର ତୃଷା ପରିତୃପ୍ତ ହେଲା ନାହିଁ । ଆମେ କିଛି ଶିଖି ପାରୁ ନାହିଁ, ଏହି ଗୋଟିଏ କଥା ଜାଣିବା ପାଇଁ ମୁଁ ବହୁତ ସମୟ ନଷ୍ଟ କଲି । ମୋର ମନେ ହୁଏ, ପ୍ରତ୍ୟେକ ବସ୍ତୁର ମୂଳ ସତ୍ତ୍ୱରେ ଏମିତି କିଛି ଅଛି, ଯାହା ଜାଣି ହୁଏ ନାହିଁ । ଆତ୍ମାର ସ୍ୱରୂପ କଦାପି ଶିଖି ହୁଏ ନାହିଁ ।

ଗୋବିନ୍ଦ ରାସ୍ତାରେ ଠିଆ ହୋଇ ହାତ ହଲାଇ କହିଲା— ଏସବୁ କଥା କହି ମୋତେ ଦୁଃଖ ଦିଅ ନାହିଁ । ସିଦ୍ଧାର୍ଥ, ଯଦି ଜ୍ଞାନ ସତ୍ୟ ନ ହୁଏ, ତାହା ହେଲେ କେଉଁଥିରେ ଦୁନିଆରେ ମୁକ୍ତି ଯାଚିଇ କରିବ ?

ସେ ଉପନିଷଦରୁ ଗୋଟିଏ ଶ୍ଳୋକ ଆବୃତ୍ତି କଲା —

ଶୁଚି ଶୁଭ୍ର ମନ ଯାହାର ଡୁବିଛି ଆତ୍ମାରେ,
ସେହି ଜାଣେ କି ଆନନ୍ଦ ମହା ମୌନତାରେ ।

ସିଦ୍ଧାର୍ଥ କିଛି କ୍ଷଣ ନୀରବରେ ଗୋବିନ୍ଦର କଥା ଗୁଡ଼ିକ ବିଚାର କଲା— ସତେ ତ ! ଯାହା କିଛି ଶ୍ରଦ୍ଧାର ଯୋଗ୍ୟ ବୋଲି ମନେ ହୁଏ, ଶେଷକୁ ସେଥିରୁ କଅଣ ରହେ ?

ଦୁଇ ବନ୍ଧୁ ସନ୍ନ୍ୟାସୀମାନଙ୍କ ସହିତ ତିନି ବର୍ଷ ବିତାଇଲା ପରେ, ଗୋଟିଏ ଜନଶ୍ରୁତି ସେମାନେ ଶୁଣିବାକୁ ପାଇଲେ— ଗୌତମ ବୁଦ୍ଧ ନାମକ ଜଣେ ମହାତ୍ମାଙ୍କର ଆବିର୍ଭାବ ହୋଇଛି । ସେ ସଂସାରର ସକଳ ଦୁଃଖ ଜୟ କରିଛନ୍ତି ଏବଂ ଜୀବନ ମରଣର ଚକ୍ରାକାର ଗତି ସ୍ତବ୍ଧ କରି ଦେଇଛନ୍ତି । ତାଙ୍କର ଗୃହ, ସଂସାର, ସମ୍ପତ୍ତି କିଛି ନାହିଁ । ପରିଧାନ ଗେରୁଆ ବସନ । ଶିଷ୍ୟଙ୍କ ଗହଣରେ ସେ ଦେଶରେ ଧର୍ମ ଉପଦେଶ ପ୍ରଚାର କରି ବୁଲୁଛନ୍ତି । କେତେ ରାଜା, ବ୍ରାହ୍ମଣ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରୁଛନ୍ତି ।

ଏହି କାହାଣୀ ଦେଶରେ ସବୁଆଡ଼େ ଦ୍ରୁତ ଗତିରେ ବ୍ୟାପିଗଲା । ଅନେକେ ବିଶ୍ୱାସ କଲେ, ଅନେକେ ପୁଣି ସନ୍ଦେହ କଲେ । କେତେକ ମହାପୁରୁଷଙ୍କ ସନ୍ଧାନରେ ବାହାରିଲେ । ତାଙ୍କର ଭକ୍ତମାନେ କହି ବୁଲିଲେ— ଗୌତମ ବୁଦ୍ଧଙ୍କର ଜ୍ଞାନ ପ୍ରଗାଢ଼, ସେ ନିର୍ବାଣର ଗୁପ୍ତ ମନ୍ତ୍ର ଜାଣନ୍ତି, ଜନ୍ମ ମରଣର ବିବର୍ତ୍ତନ ତାହାଙ୍କୁ ଆଉ ଛୁଇଁବ ନାହିଁ, ସେ ଅସମ୍ଭବକୁ ସମ୍ଭବ କରିଛନ୍ତି, ସଇତାନକୁ ଜୟ କରିଛନ୍ତି ଏବଂ ଦେବତାମାନଙ୍କ ସହିତ କଥୋପକଥନ ହୋଇଛନ୍ତି ।

ବୁଦ୍ଧଙ୍କ ସମ୍ବନ୍ଧରେ ଏହି କାହାଣୀରୁ ପୀଡ଼ିତ ପୃଥିବୀର କଠୋର ଜୀବନରେ ଦେଖା ଦେଲା ନୂତନ ଆଶା, ଶୁଣା ଗଲା ନୂତନ ଆଶାର ବାଣୀ, ଯେଉଁଥିରେ ଥିଲା ଶାନ୍ତି ଓ ସାନ୍ତ୍ୱନା, ଭବିଷ୍ୟତରେ ସୁସ୍ପଷ୍ଟ ସମ୍ଭାବନା ।

ଜନଶ୍ରୁତି ଆସି ପହଞ୍ଚିଲା ବନଚାରୀ ସନ୍ନ୍ୟାସୀମାନଙ୍କ କର୍ଣ୍ଣ କୁହରରେ । ସିଦ୍ଧାର୍ଥ ଓ ଗୋବିନ୍ଦ ମଧ୍ୟ ଅଳପ ବହୁତ ଏହି

ଖବର ଶୁଣି ପାରିଲେ । ବୟୋଜ୍ୟେଷ୍ଠ ସନ୍ନ୍ୟାସୀ ବୁଦ୍ଧଙ୍କ କଥା ପସନ୍ଦ କଲେ ନାହିଁ ।

ଦିନେ ଗୋବିନ୍ଦ ସିଦ୍ଧାର୍ଥକୁ ଜଣାଇଲା — ଆଜି ମୁଁ ଗ୍ରାମକୁ ଯାଇଥିଲି । ଜଣେ ବ୍ରାହ୍ମଣ କୁମାର ମଗଧରୁ ଆସିଛି । ସେ ନିଜ ଚକ୍ଷୁରେ ବୁଦ୍ଧଙ୍କୁ ଦେଖିଛି ଏବଂ ତାଙ୍କର ଉପଦେଶ ଶୁଣିଛି । ଆମେ ବି ଚାଲି ଯିବା, ଥରେ ତାଙ୍କର ଉପଦେଶ ଶୁଣି ଆସିବା ।

ସିଦ୍ଧାର୍ଥ କହିଲା— ମୁଁ ତ ଭାବିଥିଲି, ତୁମେ ସାଧୁମାନଙ୍କ ସାଙ୍ଗରେ ରହି ବୃଦ୍ଧ ବୟସ ପର୍ଯ୍ୟନ୍ତ ସେମାନଙ୍କର ଶିକ୍ଷା ଅଭ୍ୟାସ କରିବ । ମାତ୍ର ଏକ୍ଷଣି ଦେଖୁଛି, ତୁମେ ଏକ ନୂତନ ପଥ ଗ୍ରହଣ କରିବାକୁ ଚାହଁ ।

ମୋତେ ବିଦ୍ରୂପ କରି ତୁମେ କୌତୁକ ଅନୁଭବ କରିବାକୁ ବସିଲେ, ସେଥିରେ ମୋର କିଛି ଯାଏ ଆସେ ନାହିଁ । ତୁମର କଅଣ ତାହାଙ୍କ ଉପଦେଶ ଶୁଣିବା ପାଇଁ ଆଗ୍ରହ ହେଉ ନାହିଁ; ସିଦ୍ଧାର୍ଥ ? ତୁମେ ପରା ମୋତେ କହିଥିଲ ଯେ ସନ୍ନ୍ୟାସୀମାନଙ୍କ ସହିତ ତୁମେ ବେଶି ଦିନ ରହିବ ନାହିଁ ?

ସିଦ୍ଧାର୍ଥ ହସି ହସି କହିଲା—ଦେଖୁଛି, ତୁମେ ତ ମୋ କଥା ସବୁ ବେଶ୍ ମନେ ରଖିଛ । ମୁଁ ଆହୁରି କହୁଥିଲି, ବିଦ୍ୟା ଓ ଉପଦେଶରେ ଆସ୍ଥା ହରାଇଛି ଏବଂ ଗୁରୁ ବାକ୍ୟରେ ମୋର ଆଉ ବିଶ୍ୱାସ ନାହିଁ । ଯାହା ହେଉ, ନୂତନ ଉପଦେଶ ଶୁଣିବାକୁ ଯିବା ପାଇଁ ମୁଁ ଏକ୍ଷଣି ପ୍ରସ୍ତୁତ ଅଛି । ମାତ୍ର ଇତି ମଧ୍ୟରେ ନୂତନ ଶିକ୍ଷାର ଶ୍ରେଷ୍ଠ ଫଳ ସହିତ ଆମର ପରିଚୟ ହୋଇଛି ।

ତୁମଙ୍କ ସମ୍ମତି ହେତୁ ଆନନ୍ଦିତ ହେଲା । କିନ୍ତୁ ଗୌତମଙ୍କ ସହିତ ସାକ୍ଷାତ ହେବା ପୂର୍ବରୁ ଆମେ କିପରି ତାଙ୍କର ଶିକ୍ଷାର ପରିଚୟ ପାଇଛୁ, ଟିକିଏ ବୁଝାଇ କୁହ ତ ଦେଖି ।

ଗୋବିନ୍ଦ, ମୁଁ ଗୌତମଙ୍କ ଶିକ୍ଷାର ଯେଉଁ ଫଳ ପାଇଛି, ଆଗେ ତାହାର ସମ୍ପୂର୍ଣ୍ଣ ସଦ୍‌ବ୍ୟବହାର କରାଯାଉ । ତାଙ୍କର ଉପଦେଶ ଆମକୁ ପ୍ରଲୁବ୍‌ଧ କରି ଶ୍ରମଣମାନଙ୍କ ନିକଟରୁ ଦୂରେଇ ନେଉଛି ।

ସିଦ୍ଧାର୍ଥ ବୟୋବୃଦ୍ଧ ସନ୍ନ୍ୟାସୀଙ୍କୁ ବିନୟରେ ସେମାନଙ୍କର ଚାଲିଯିବାର ସିଦ୍ଧାନ୍ତ ଜଣାଇଲା । କିନ୍ତୁ ବୃଦ୍ଧ କ୍ରୁଦ୍ଧ ହୋଇ କଠୋର ଭାଷାରେ ସେମାନଙ୍କୁ ତିରସ୍କାର କଲେ ।

ଗୋବିନ୍ଦ ଭୟଭୀତ ହେଲା । ମାତ୍ର ସିଦ୍ଧାର୍ଥ ତାହାର କାନରେ କହିଲା—ଏହି ବୃଦ୍ଧ ଠାରୁ ଯେ ମୁଁ କିଛି ଶିଖିଛି, ତାହାର ଠିକଏ ପରିଚୟ ଦେଇଯିବି ।

ସିଦ୍ଧାର୍ଥ ସନ୍ନ୍ୟାସୀଙ୍କ ସାମନାରେ ଏକାଗ୍ର ଚିତ୍ତରେ ଛିଡ଼ା ହେଲା ଏବଂ ତାଙ୍କର ଚକ୍ଷୁରେ ନିଜର ଚକ୍ଷୁ ନିବଦ୍ଧ କରି ସ୍ଥିର ଦୃଷ୍ଟି ଦ୍ୱାରା ବୃଦ୍ଧଙ୍କୁ ବନ୍ଦୀ କଲା । ସନ୍ନ୍ୟାସୀ ସମ୍ମୋହିତ ହେଲେ । ତାଙ୍କର ତୁଣ୍ଡରୁ କଥା ବାହାରିଲା ନାହିଁ । ସିଦ୍ଧାର୍ଥର କୁହୁକ ତାହାଙ୍କୁ ଶକ୍ତିହୀନ କରିଦେଲା । ବୃଦ୍ଧ କେତେ ଥର ରହି ରହି ସେମାନଙ୍କର ଶୁଭ ଯାତ୍ରାର କାମନା ଜଣାଇଲେ । ତହୁଁ ଦୁଇ ବନ୍ଧୁ ତାହାଙ୍କୁ ଧନ୍ୟବାଦ ଜଣାଇ ରାସ୍ତାକୁ ବାହାରିଗଲେ ।

ବାଟରେ ଯାଉଁ ଯାଉଁ ଗୋବିନ୍ଦ କହିଲା— ସିଦ୍ଧାର୍ଥ, ମୋର ଯାହା ଧାରଣା ଥିଲା ତୁମେ ସନ୍ନ୍ୟାସୀମାନଙ୍କ ଠାରୁ ବରଂ ଅଧିକ କିଛି ଶିଖିଛ । ଜଣେ ବୃଦ୍ଧ ସାଧୁଙ୍କୁ ଏପରି ଭାବରେ ସମ୍ମୋହିତ କରିବା ଏଡ଼େ ସହଜ କଥା ନୁହେଁ । ଏଠାରେ ଆଉ କିଛି ଦିନ ରହିଥିଲେ ତୁମେ ନିଶ୍ଚୟ ପାଣି ଉପରେ ଚାଲିବାର କୌଶଳ ଶୀଘ୍ର ଶିଖି ଯାଇ ପାରି ଥାଆନ୍ତ ।

ସିଦ୍ଧାର୍ଥ ଜବାବ ଦେଲା— ପାଣି ଉପରେ ଚାଲିବାର ଆକାଙ୍‌କ୍ଷା ମୋର ନାହିଁ । ବୃଦ୍ଧ ସାଧୁମାନେ ସେହି ରକମ ଚାତୁରୀରେ ସନ୍ତୁଷ୍ଟ ରହନ୍ତୁ ।

୭।

ଶ୍ରାବସ୍ତୀ ନଗରୀର ଉପକଣ୍ଠରେ ଜେତାବନ ଉଦ୍ୟାନରେ ଗୌତମ ବୁଦ୍ଧ ବାସ କରୁଥିଲେ । ବୁଦ୍ଧଙ୍କର ଭକ୍ତ ବଣିକ ଅନାଥ ପିଣ୍ଡଦ ଜେତାବନ ଗୌତମଙ୍କୁ ଉତ୍ସର୍ଗ କରିଥିଲେ ।

ଗୌତମଙ୍କୁ ଖୋଜି ଖୋଜି ଦୁଇ ବନ୍ଧୁ ଆସି ଶ୍ରାବସ୍ତୀ ନଗରୀରେ ପହଞ୍ଚିଲେ ।

ରାଜପଥରେ ବୌଦ୍ଧ ଭିକ୍ଷୁ ସମେତ ଅଗଣିତ ପର୍ଯ୍ୟଟକ ଜେତାବନ ଅଭିମୁଖେ ଚାଲିଥିଲେ । ସିଦ୍ଧାର୍ଥ ଓ ଗୋବିନ୍ଦ ସେହି ଜନ ସ୍ରୋତରେ ମିଶିଗଲେ । ରାତିରେ ସେମାନେ ଜେତାବନରେ ପହଞ୍ଚିଲେ । ସେତେବେଳେ ସମବେତ ବିରାଟ ଜନତାର କଣ୍ଠରେ ଆଶ୍ରୟର ପ୍ରାର୍ଥନା ଧ୍ୱନିତ ହେଉଥିଲା । ଦୁଇ ବନ୍ଧୁ ମଧ୍ୟ ସେଠାରେ ସହଜରେ ଆଶ୍ରୟ ପାଇଲେ ।

ସକାଳେ । ଉଦ୍ୟାନର ଚାରିଆଡ଼କୁ ଚାହିଁ ସିଦ୍ଧାର୍ଥ ଓ ଗୋବିନ୍ଦ ବିସ୍ମିତ ହେଲେ । ବିପୁଳ ସଂଖ୍ୟକ ଭକ୍ତ ସେଠାରେ ରାତି ଯାପନ କରିଥିଲେ । ସେହି ଚମତ୍କାର ଉଦ୍ୟାନର ପଥରେ ଗେରୁଆ ଧାରୀ ଭିକ୍ଷୁମାନେ ବୁଲୁଥିଲେ, କେତେକ ଗଛ ତଳେ ଧ୍ୟାନମଗ୍ନ ଥିଲେ ଏବଂ କେତେକ ଆଧ୍ୟାତ୍ମିକ ଆଲୋଚନା ଚଳାଇଥିଲେ । ଅଧିକାଂଶ ଭିକ୍ଷୁ ଭିକ୍ଷା ପାତ୍ର ହାତରେ ଧରି ଦ୍ୱିପହରର ଖାଦ୍ୟ ସଂଗ୍ରହ ନିମନ୍ତେ ଜଣ ଜଣ ହୋଇ ଉଦ୍ୟାନ ତ୍ୟାଗ କଲେ । ଦିନ ସାରା ସେହି ଥରଟିଏ ମାତ୍ର ଆହାର । ବୁଦ୍ଧ ନିଜେ ମଧ୍ୟ ଭିକ୍ଷା ପାତ୍ର ହାତରେ ଧରି ଧୀରେ ଧୀରେ ଉଦ୍ୟାନ ତ୍ୟାଗ କଲେ ।

ସିଦ୍ଧାର୍ଥ ତତ୍‌କ୍ଷଣାତ୍ ତାହାଙ୍କୁ ଚହ୍ନି ପାରି ଗୋବିନ୍ଦର କାନରେ କହିଲ— ଦେଖ, ବୁଦ୍ଧ ଯାଉଛନ୍ତି ।

ଗୋବିନ୍ଦ ଗେରୁଆ ଧାରୀ ସନ୍ନ୍ୟାସୀଙ୍କୁ ଗଭୀର ଆଗ୍ରହରେ ଲକ୍ଷ୍ୟ କଲ । ଦୁଇ ବନ୍ଧୁ ତାହାଙ୍କ ପଛେ ପଛେ ଚାଲିଲେ ।

ବୁଦ୍ଧ ଚିନ୍ତାମଗ୍ନ ଚିତ୍ତରେ ଧୀରେ ଧୀରେ ଆଗେଇ ଚାଲିଥିଲେ । ତାଙ୍କର ମୁଖ ମଣ୍ଡଳ ଓ ପଦକ୍ଷେପ ଶାନ୍ତ, ନତ ଦୃଷ୍ଟି, ଝୁଲି ପଡ଼ିଥିବା ବାହୁ ଯୁଗଳ, ହାତର ପ୍ରତି ଆଙ୍ଗୁଳି ଅଖଣ୍ଡ ଶାନ୍ତିର ବାଣୀ ଘୋଷଣା କରୁଥିଲ— ଏକ ଅମ୍ଳାନ ଜ୍ୟୋତିର ଶିଖା ।

ଗୌତମ ହାତରେ ଭିକ୍ଷା ପାତ୍ର ଧରି ରାଜପଥରେ ବୁଲୁଥିଲେ । ତାଙ୍କର ଅପୂର୍ବ ଜ୍ୟୋତି ଓ ମନୋରମ ପ୍ରଶାନ୍ତି ଦେଖି, ଦୁଇ ନବୀନ ସନ୍ନ୍ୟାସୀ ମୁଗ୍‌ଧ ହେଉଥିଲେ ।

ଗୋବିନ୍ଦ ମନେ ମନେ କହିଲ— ଆଜି ତଥାଗତଙ୍କ ମୁଖରୁ ଉପଦେଶ ଶୁଣିବାକୁ ପାଇବି ।

ସିଦ୍ଧାର୍ଥ କିଛି କହିଲ ନାହିଁ । ଉପଦେଶ ସମ୍ବନ୍ଧରେ ତାହାର କୁତୂହଳ ନ ଥିଲ । ଗଭୀର ଆଗ୍ରହରେ ତାହାର ଦୃଷ୍ଟି ବୁଦ୍ଧଙ୍କ ମସ୍ତକ, କାନ୍ଧ ଓ ଆଲମ୍ବିତ ସ୍ଥିର ବାହୁ ଉପରେ ନିବଦ୍ଧ ରହିଥିଲ । ତାଙ୍କର ପ୍ରତି ଅଙ୍ଗୁଳିରୁ ବିଚ୍ଛୁରିତ ହେଉଥିଲ ଜୀବନ୍ତ ଜ୍ଞାନ, ଆଉ ସେହି ଜ୍ଞାନରୁ ସତ୍ୟର ସୃଷ୍ଟି । ସିଦ୍ଧାର୍ଥ ଜୀବନରେ କେବେ ହେଲେ କାହାକୁ ଏତେ ଭଲ ପାଇ ନ ଥିଲ ।

ବୁଦ୍ଧଙ୍କ ସଙ୍ଗରେ ନୀରବରେ ନଗର ପରିକ୍ରମା କରି ସାରି ଦୁଇ ବନ୍ଧୁ ତାହାଙ୍କ ପଛେ ପଛେ ଜେତାବନକୁ ଫେରି ଆସିଲେ । ଉଦ୍ୟାନକୁ ଫେରି ବୁଦ୍ଧ ଶିଷ୍ୟ ପରିବୃତ ହୋଇ ଭୋଜନରେ ବସିଲେ । ଆହାର୍ଯ୍ୟର ପରିମାଣ ଦେଖି ସିଦ୍ଧାର୍ଥ ବିସ୍ମିତ ହେଲେ—

ଚର୍ବିଡ଼ଇଛିଏ ବି ଏହା ଠାରୁ ବେଶି ଖାଏ । ଭୋଜନ ପରେ ବୁଦ୍ଧ ଆମ୍ବ ଗଛର ଛାଇରେ ଯାଇ ବସିଲେ ।

ଅପରାହ୍ନରେ ଦିନର ଉତ୍ତାପ କମିଲା । ଆଶ୍ରମର ସମସ୍ତେ ଆସି ଉପଦେଶ ଶୁଣିବାକୁ ମିଳିତ ହେଲେ । ଗୋବିନ୍ଦ ଓ ସିଦ୍ଧାର୍ଥ ମଧ୍ୟ ପ୍ରଥମ ଥର ପାଇଁ ବୁଦ୍ଧଙ୍କର ବାଣୀ ଶୁଣିବାର ସୁଯୋଗ ପାଇଲେ । ମୃଦୁ ଶାନ୍ତ ଦୃଢ଼ କଣ୍ଠରେ ଗୌତମ ଦୁଃଖ ସମ୍ବନ୍ଧରେ କହିଲେ ଏବଂ ସେଥିରୁ ମୁକ୍ତି ପାଇବାର ଉପାୟ ଆଲୋଚନା କଲେ । ସେ ଧର୍ମ ଚକ୍ର ଶିକ୍ଷା ଦେଲେ, ଉଦାହରଣ ସାହାଯ୍ୟରେ ଅଷ୍ଟାଙ୍ଗ ଆର୍ଯ୍ୟ ମାର୍ଗ ବ୍ୟାଖ୍ୟା କଲେ ଏବଂ ଗୋଟିଏ ବିଷୟକୁ ବାରମ୍ବାର ବୁଝାଇ ନିଜର ବକ୍ତବ୍ୟ ପରିଷ୍କାର କରି ଦେଉଥିଲେ । ତାଙ୍କର ଉପଦେଶ ଶ୍ରୋତା-ମାନଙ୍କ ହୃଦୟରେ ଆଲୋକର ରଶ୍ମି ପରି, ଆକାଶର ନକ୍ଷତ୍ରପରି ପହଞ୍ଚୁଥିଲା ।

ବୁଦ୍ଧଙ୍କର ଆଲୋଚନା ସରିଲା ବେଳକୁ ରାତି ହୋଇ ଯାଇ-ଥିଲା । ଶ୍ରୋତାମାନଙ୍କ ଭିତରୁ ଅନେକେ ଦୁଇ ବନ୍ଧୁଙ୍କୁ ସମ୍ପ୍ରଦାୟ ଭୁକ୍ତ କରିବାକୁ ଅନୁରୋଧ କରନ୍ତେ, ବୁଦ୍ଧ ତାହା ଗ୍ରହଣ କରି କହିଲେ— ତୁମ୍ଭେମାନେ ମନୋଯୋଗ ସହକାରେ ମୋ କଥା ଶୁଣିଲ । ଆମ୍ଭମାନଙ୍କ ସହିତ ଯୋଗ ଦେଇ ଦୁଃଖ ଜୟ କରି, ଚରମ ଆନନ୍ଦ ପଥରେ ଯାତ୍ରା ଆରମ୍ଭ କର ।

ଗୋବିନ୍ଦ ଆଗକୁ ଆସି କହିଲା— ମୁଁ ଭଗବାନ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଚାହେଁ । ତାହାର ଆବେଦନ ଗୃହୀତ ହୁଅନ୍ତେ, ଗୋବିନ୍ଦର ଅନ୍ତର ଆନନ୍ଦରେ ପରିପୂର୍ଣ୍ଣ ହେଲା ।

ବିଶ୍ରାମ ନେବା ନିମନ୍ତେ ବୁଦ୍ଧ ସେଠାରୁ ଚାଲିଗଲେ । ଗୋବିନ୍ଦ ସିଦ୍ଧାର୍ଥ ଆଡ଼କୁ ବୁଲି ପଡ଼ି ବ୍ୟଗ୍ର କଣ୍ଠରେ କହିଲା— ଆମେ ଦୁହେଁ ବୁଦ୍ଧଙ୍କର ଉପଦେଶ ଶୁଣିଲେ । ମୁଁ ଏହି ନବ ଧର୍ମରେ

ଘାଷିତ ହେଲ। କିନ୍ତୁ ବନ୍ଧୁ, ତୁମେ କଅଣ ଆହିବ ନାହିଁ ମୁକ୍ତି ପଥରେ ?

ସିଦ୍ଧାର୍ଥ ବହୁ କ୍ଷଣ ଗୋବନ୍ଦର ମୁହଁକୁ ଚାହିଁ ରହି ଧୀରେ ଧୀରେ କହିଲ— ଗୋବନ୍ଦ, ତୁମେ ମୋର ବାଲ୍ୟ ବନ୍ଧୁ, ବହୁ ଦିନ ହେଲ ମୋ ପଛେ ପଛେ ଚାଲିଛ । କେତେ ଥର ମୁଁ ଭାବିଛି; ତୁମେ କେବେ ଏକାକୀ ପଥ ଚାଲି ଶିଖିବ ? ଏକ୍ଷଣି ଦେଖୁଛି, ତୁମେ ନିଜର ନୂତନ ପଥ ବାଛି ନେଲ । ତୁମେ ଏହି ପଥର ଶେଷ ପର୍ଯ୍ୟନ୍ତ ଯିବ ବୋଲି ଆଶା କରେଁ । ତୁମେ ମୋକ୍ଷ ଲଭ କର, ମୋର ଆନ୍ତରିକ କାମନା ।

ସିଦ୍ଧାର୍ଥର କଥାର ମର୍ମ ଉପଲବ୍ଧି କରି ନ ପାରି ଗୋବନ୍ଦ ଅଧୈର୍ଯ୍ୟ ହୋଇ କହିଲ— ବୁଦ୍ଧଦେବଙ୍କର ଆନୁଗତ୍ୟ ସ୍ୱୀକାର ନ କରି ମୋର ଉପାୟ ନାହିଁ ।

ଗୋବନ୍ଦର କାନ୍ଧରେ ହାତ ରଖି ସିଦ୍ଧାର୍ଥ କହିଲ— ତୁମେ ତ ମୋର ଶୁଭ କାମନା ଶୁଣିଲ !

ଗୋବନ୍ଦ ହଠାତ୍ ବୁଝି ପାରିଲ, ବନ୍ଧୁ ତାହାଙ୍କୁ ଛାଡ଼ି ଚାଲିଯିବ । ଅଶ୍ରୁରୁଦ୍ଧ କଣ୍ଠରେ ସେ କହିଲ— ସିଦ୍ଧାର୍ଥ !

ସିଦ୍ଧାର୍ଥ ଧୀରେ ଧୀରେ କହିଲ— ଗୋବନ୍ଦ, ତୁମେ ଏକ୍ଷଣି ବୌଦ୍ଧ ଭିକ୍ଷୁମାନଙ୍କ ଭିତରୁ ଜଣେ । ତୁମେ ଗୃହ, ପିତାମାତା, ସମ୍ପତ୍ତି, ଆକାଂକ୍ଷା ଓ ବନ୍ଧୁତା ସବୁ କିଛି ତ୍ୟାଗ କରିଛ । ତଥାଗତଙ୍କର ତାହାହିଁ ଉପଦେଶ । କାଲି ସକାଳେ ମୁଁ ତୁମ ନିକଟରୁ ବିଦାୟ ନେବି ।

ଦୁଇ ବନ୍ଧୁ କିଛି ସମୟ ଉଦ୍ୟାନରେ ବୁଲି ବୁଲି ଶୋଇ ପଡ଼ିଲେ । ମାତ୍ର କାହାକୁ ନିଦ ହେଲ ନାହିଁ ।

ସକାଳେ ଗୋବିନ୍ଦ ବାଲ୍ୟ ବନ୍ଧୁକୁ ଶେଷ ଥର ପାଇଁ ଆଲିଙ୍ଗନ କଲା, ଜୋର କରି ନିଜକୁ ତାହାର ସ୍ପର୍ଶରୁ ଘୁଞ୍ଚାଇ ନେଲା । ତା ପରେ ସେ ନୂତନ ଗେରୁଆ ଲୁଗା ପିନ୍ଧି ତାହା ଠାରୁ ଦୂରେଇ ଗଲା ।

ଗଭୀର ଚିନ୍ତାମଗ୍ନ ହୋଇ ବୁଲୁ ବୁଲୁ ସିଦ୍ଧାର୍ଥ ଗୌତମଙ୍କ ସାମନାରେ ଆସି ପଡ଼ିଥିଲା । ବୁଦ୍ଧଙ୍କ ପ୍ରଶାନ୍ତ ବଦନ ଦେଖି ସିଦ୍ଧାର୍ଥ ମୁଗ୍ଧ ହେଲା । ସଭକ୍ତିରେ ପ୍ରଣାମ କରି ତାହାଙ୍କ ସହିତ କେତେ ପଦ କଥା କହିବା ପାଇଁ ସେ ଅନୁମତି ମାଗିଲା । ବୁଦ୍ଧ ନୀରବରେ ସମ୍ମତି ଜଣାଇଲେ ।

ସିଦ୍ଧାର୍ଥ କହିଲା— କାଲି ଆପଣଙ୍କର ଅଲୌକିକ ଉପଦେଶ ଶୁଣିଲି । ବହୁ ଦୂରରୁ ଆମେ ଦୁଇ ବନ୍ଧୁ ଆସିଥିଲୁ । ବନ୍ଧୁ ଆପଣଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଏଠାରେ ରହିଲା । ମୁଁ ପୁଣି ନୂତନ ପଥରେ ଯାତ୍ରା କରିବ ।

ବୁଦ୍ଧ ମଧୁର କଣ୍ଠରେ କହିଲେ— ତୁମର ଯାହା ଇଚ୍ଛା ।

ସିଦ୍ଧାର୍ଥ ପୁଣି ଜଣାଇଲା— ହେ ମହାଭାଗ, ଆପଣଙ୍କର କଥାସବୁ ସମ୍ପୂର୍ଣ୍ଣ ସ୍ପଷ୍ଟ ଓ ପ୍ରମାଣ ଦ୍ୱାରା ସମର୍ଥିତ । ଆପଣ ଦେଖାଇଛନ୍ତି, ଏହି ଜଗତ ଗୋଟିଏ କାର୍ଯ୍ୟ-କାରଣର ଅନନ୍ତ ଶୃଙ୍ଖଳ । ଆଉ କେହି ଏହି କଥାଟି ଏମିତି ସୁନ୍ଦର ଭାବରେ ଅକାଟ୍ୟ ପ୍ରମାଣ ଦ୍ୱାରା ବାଖ୍ୟା କରି ପାରି ନାହାଁନ୍ତି । ଯେତେବେଳେ ବ୍ରାହ୍ମଣମାନେ ଆପଣଙ୍କ ଶିକ୍ଷାର ଆଲୋକ ଦ୍ୱାରା ଜଗତକୁ ନୂତନ ଭାବରେ ଦେଖିବେ, ସେମାନେ ନିଶ୍ଚୟ ବୁଝି ପାରିବେ ଯେ ଜଗତ ଦେବତା-ମାନଙ୍କ କରୁଣା ଉପରେ ନିର୍ଭର କରେ ନାହିଁ ଏବଂ ସକଳ ଘଟଣା ପରସ୍ପର ସହିତ ଜଡ଼ିତ । ସବୁ କିଛି ସ୍ଫଟିକ ପରି ସ୍ୱଚ୍ଛ । ଜଗତର ଐକ୍ୟବୋଧକୁ ଆପଣ ବଡ଼ କରି ଦେଖାଇଛନ୍ତି । ଜୀବନ ଓ

ମରଣକୁ ଧରି ଜଗତ ପ୍ରବହମାନ ନଦୀ ପରି ବହି ଚାଲିଛି । ସବୁ ଏକ ଓ ଅଭିନ୍ନ । କିନ୍ତୁ ଗୋଟିଏ ସ୍ଥାନରେ ଏହି ଅଖଣ୍ଡତାର ଆଦର୍ଶ ବ୍ୟାହତ ହୋଇଛି । ନିର୍ବାଣ ପ୍ରାପ୍ତି ସମ୍ବନ୍ଧରେ ଆପଣଙ୍କର ମତବାଦ ଆକସ୍ମିକ ଓ ଖାପଛଡ଼ା ମନେ ହୁଏ । ଏଥି ପାଇଁ ଆପଣଙ୍କ ଅଖଣ୍ଡ ଜଗତର ଆଦର୍ଶ ଭାଙ୍ଗି ପଡ଼ୁଛି ।

ନୀରବରେ ଏହା ଶୁଣି ଗୌତମ ପ୍ରସନ୍ନ କଣ୍ଠରେ କହିଲେ—ବ୍ରାହ୍ମଣ କୁମାର, ତୁମେ ମୋ ଉପଦେଶ ଭଲ ଭାବରେ ଶୁଣିଛ । ତୁମର ଚିନ୍ତା ସତରେ ପ୍ରଶଂସନୀୟ । ତୁମେ ଗୋଟିଏ ତ୍ରୁଟି ପାଇଛ ସତ । ମାତ୍ର ତୁମେ ଆଉ ଥରେ ଉତ୍ତମ ରୂପେ ଭାବି ଦେଖ । ମତାମତରେ ଅବଶ୍ୟ କିଛି ମୂଲ୍ୟ ନାହିଁ । ଯେ କୌଣସି ମତକୁ ଗ୍ରହଣ ବା ତ୍ୟାଗ କରିବା ବ୍ୟକ୍ତି ବିଶେଷଙ୍କ ଉପରେ ନିର୍ଭର କରେ । ତୁମେ ଯେଉଁ ଉପଦେଶ ଶୁଣିଛ, ତାହା ମୋର ଏକମାତ୍ର ମତ ନୁହେଁ । ମୋର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ଭିନ୍ନ । ଦୁଃଖରୁ ମୁକ୍ତ ପାଇବାର ପଥ ଖୋଜିବାରେ ସାହାଯ୍ୟ କରିବା ହେଉଛି ମୋର ଲକ୍ଷ୍ୟ । ଗୌତମ ତାହାହିଁ ଶିକ୍ଷା ଦିଏ ।

ସିଦ୍ଧାର୍ଥ କହିଲି— ମୋ ଉପରେ ଅଯଥା ରୁଷ୍ଟ ହେବେ ନାହିଁ । ଆପଣଙ୍କ ଉପଦେଶ ସମ୍ବନ୍ଧରେ ତର୍କ କରିବାକୁ ମୁଁ ଆସି ନାହିଁ । ଆପଣ ଯଥାର୍ଥ କହିଛନ୍ତି, ମତାମତର କିଛି ମୂଲ୍ୟ ନାହିଁ । ଆପଣ ନିଜେ ପଥ ଖୋଜି ଖୋଜି ଆସି ଲକ୍ଷ୍ୟ ସ୍ଥଳରେ ପହଞ୍ଚିଛନ୍ତି । ଅପରର ଉପଦେଶ ସାହାଯ୍ୟରେ କେହି ମୋକ୍ଷ ଲାଭ କରି ନପାରେ । ବୁଦ୍ଧିତ୍ୱ ଲାଭର ସେହି ଚରମ ମୁହୂର୍ତ୍ତରେ ଆପଣଙ୍କ ଅନ୍ତରରେ କଅଣ ଘଟିଥିଲା, ତାହା ବାକ୍ୟ କି ଉପଦେଶ ଦ୍ୱାରା ଅନ୍ୟକୁ ବୁଝାଇବା ସମ୍ଭବ ନୁହେଁ । ଆପଣଙ୍କ ଉପଦେଶରେ ବହୁତ କଥା କୁହା ହୁଏ । କିନ୍ତୁ ଲକ୍ଷ ଲକ୍ଷ ଜନତା ଭିତରୁ ଏକମାତ୍ର ମହାତ୍ମା

ବୁଦ୍ଧ ନିଜେ କି ଅଭିଜ୍ଞତା ଲାଭ କରିଛନ୍ତି, ତାହାର ଅସଲ ପରିଚୟ ଉପଦେଶ ଭିତରେ ମିଳେ ନାହିଁ । ଆପଣଙ୍କ ଉପଦେଶ ଶୁଣିଲାଠୁଁ ମୁଁ ଏହି କଥା ଉପଲବ୍ଧି କରିଅଛି । ସେଥି ପାଇଁ ସକଳ ଗୁରୁ ଓ ସେମାନଙ୍କର ଶିକ୍ଷା ତ୍ୟାଗ କରି ମୁଁ ଏକାକୀ ନିଜ ପଥରେ ଯାଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବି, ନଚେତ ପ୍ରାଣ ଦେବି— ଏହି ସଂକଳ୍ପ କରି ମୁଁ ପୁଣି ଯାତ୍ରା ଆରମ୍ଭ କରିବି । କିନ୍ତୁ ଆଜି ଦିନଟି ମୋର ଚିରଦିନ ମନେ ପଡ଼ିବ, କାରଣ ମହାପୁରୁଷଙ୍କ ଦର୍ଶନର ସୌଭାଗ୍ୟ ମୁଁ ଲାଭ କରିଛି ।

ବୁଦ୍ଧଙ୍କ ଦୃଷ୍ଟି ଭୂମି ଉପରେ ନିବଦ୍ଧ ଥିଲା । ସେ ମୃଦୁ ସ୍ୱରରେ କହିଲେ— ତୁମର ଯୁକ୍ତିରେ ଭୁଲ ନାହିଁ । ତୁମେ ସିଦ୍ଧି ଲାଭ କର, ମୋର ଏହାହିଁ କାମନା । କିନ୍ତୁ ଯେଉଁମାନେ ମୋର ଶିଷ୍ୟତ୍ୱ ସ୍ୱୀକାର କରିଛନ୍ତି, ଯଦି ସେମାନେ ତାହା ତ୍ୟାଗ କରି ସଂସାରର କାମନା ବାସନା ଭିତରକୁ ଫେରି ଯାଆନ୍ତି, ସେମାନଙ୍କର କଅଣ କେବେ ମଙ୍ଗଳ ହେବ ?

ସିଦ୍ଧାର୍ଥ ସଙ୍ଗେ ସଙ୍ଗେ କହି ପକାଇଲା— କେବେ ହେଲେ ମୁଁ ତାହା ମନେ କରେ ନାହିଁ । ଅନ୍ୟର ଜୀବନ ସମ୍ବନ୍ଧରେ ବିଚାର କରିବାର ଅଧିକାର ମୋର ନାହିଁ । ମାତ୍ର ମୋ ଜୀବନର ବିଚାର ମୁଁ ନିଜେ କରିବାକୁ ଚାହେଁ । ଆପଣଙ୍କ ଶିଷ୍ୟତ୍ୱ ଦ୍ୱାରା ମୁଁ ଯେଉଁ ମୁକ୍ତି ପାଇ ଥାଆନ୍ତି, ତାହା ହୋଇ ଥାଆନ୍ତା ବାହ୍ୟିକ । ଯେଉଁମାନେ ଗୃହ ତ୍ୟାଗ କରିଛନ୍ତି, ସେମାନେ ସମସ୍ତେ ଅହଂକାରର ଦାଉରୁ ମୁକ୍ତି ଚାହାନ୍ତି ।

ବୁଦ୍ଧଙ୍କର ମୁଖ ମଣ୍ଡଳ ଶାନ୍ତ ଜ୍ୟୋତିରେ ଉଦ୍ଭାସିତ ହେଲା । ସେ କିଛି କ୍ଷଣ ସିଦ୍ଧାର୍ଥକୁ ନିରୀକ୍ଷଣ କରି ଏକ ଅଲକ୍ଷ୍ୟ ଭଙ୍ଗୀରେ

ବାଦ୍ଧାକ୍ୟର ଇଙ୍ଗିତ ଜଣାଇଲେ — ତୁମର ବୁଦ୍ଧି ତୀକ୍ଷ୍ଣ । କିନ୍ତୁ ଅତି ବୁଦ୍ଧିଆ ହେବା ଅବଶ୍ୟ ବିପଦଜନକ ।

ବୁଦ୍ଧ ଧୀରେ ଧୀରେ ଆଗେଇଲେ । ତାଙ୍କର ସ୍ଥିର ଦୃଷ୍ଟି ଓ ଅର୍ଦ୍ଧ ସ୍ଫୁଟିତ ହାସ୍ୟ ସିଦ୍ଧାର୍ଥର ସ୍ମୃତି ପଟରେ ଚିର ଦିନ ପାଇଁ ଅଙ୍କିତ ହୋଇ ରହିଲା ।

ସିଦ୍ଧାର୍ଥ ଭାବିଲା — ବୁଦ୍ଧ ମୋର ସର୍ବସ୍ୱ ଅପହରଣ କରି ଫେରାଇ ଦେଇଛନ୍ତି ତାହାଠୁଁ ବଳି ମୂଲ୍ୟବାନ ଏକ ପଦାର୍ଥ । ସେ ମୋର ବନ୍ଧୁ ଗୋବିନ୍ଦକୁ ଅପହରଣ କରିଛନ୍ତି । ଦିନେ ସେ ଥିଲା ମୋର ଛାୟା, ଏବେ ହେଲା ଗୌତମଙ୍କର ଛାୟା । କିନ୍ତୁ ସେ ମୋତେ ଫେରାଇ ଦେଇଛନ୍ତି ସିଦ୍ଧାର୍ଥକୁ, ମୋତେ ନିଜକୁ ।

## ୪

ପୂର୍ଣ୍ଣ ବୟସ୍କ ପୁରୁଷ ସିଦ୍ଧାର୍ଥ ଧୀରେ ଧୀରେ ପଥ ଚାଲୁ ଚାଲୁ ଗମ୍ଭୀର ଭାବରେ ଭାବୁଥିଲା । ଗୁରୁ ଖୋଜି ତାଙ୍କର ଉପଦେଶ ଶୁଣିବା ପାଇଁ ଦିନେ ସେ ପାଗଳ ହୋଇ ପଥ ଘାଟରେ ବୁଲି ବୁଲୁଥିଲା । କିନ୍ତୁ ଆଜି ସେ ଦିନ ଆଉ ନାହିଁ । ବୁଦ୍ଧଙ୍କ ପରି ଜ୍ଞାନୀ ଶ୍ରେଷ୍ଠ ମହାତ୍ମାଙ୍କୁ ସେ ଗୁରୁ ବୋଲି ସ୍ୱୀକାର କରି ପାରିଲା ନାହିଁ । ସେଥି ପାଇଁ ସେ ଦୂରକୁ ଚାଲି ଆସିଲା ।

ଗୁରୁ କଅଣ ତାହାକୁ ଶିକ୍ଷା ଦେଇ ପାରିଲେ ନାହିଁ ? ସେ ଅହଂଭାବକୁ ବୁଝିବାକୁ ଚାହୁଁଥିଲା, ତାହାର ହାତରୁ ମୁକ୍ତି ଚାହୁଁଥିଲା । ତାହାକୁ ଜୟ କରି ନ ପାରିବାରୁ ସେ ଆତ୍ମ ଗୋପନର ବାହାନାରେ

ତାହାଠାରୁ ନେଉଥିଲା । ସଂସାରରେ ସମସ୍ତଙ୍କ ସାଙ୍ଗରେ ଏକ ହୋଇ ସୁଦ୍ଧା ସେ ପୃଥକ ଓ ବିଚ୍ଛିନ୍ନ ଅସ୍ତିତ୍ୱ ନେଇ ରହିଥିଲା ସିଦ୍ଧାର୍ଥର ନାମ ଧାରଣ କରି । ଏହାହିଁ ଏକ ବିରାଟ ରହସ୍ୟ ।

ଏହି ଚିନ୍ତା ସିଦ୍ଧାର୍ଥକୁ ଆଚ୍ଛନ୍ନ କଲା କ୍ଷଣି, ତାହାର ଗତି ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ପର ମୁହୂର୍ତ୍ତରେ ଏହି ଚିନ୍ତାର ଆବର୍ତ୍ତରେ ଆଉ ଗୋଟିଏ ନୂତନ ଭାବନା ତାହାର ଅନ୍ତରରେ ଉଙ୍କି ମାରିଲା —ନିଜକୁ ନ ଜାଣିବାର କାରଣ କଅଣ ? ପ୍ରଥମ କାରଣ ହେଉଛି, ସେ ନିଜକୁ ଭୟ କରି ସଦା ବେଳେ ତାହା ନିକଟରୁ ପଳାଇ ଯାଇ ଆତ୍ମା ଓ ପରମ ବ୍ରହ୍ମକୁ ଖୋଜି ଖୋଜି ନିଜକୁ ତଳେ ତଳେ କ୍ଷୟ କରିଛି ଏବଂ ନିଜର ଅସ୍ତିତ୍ୱକୁ ଅଗ୍ରାହ୍ୟ କରି ଆଜି ପଥ ମଝିରେ ନିଜକୁ ହଜାଇ ଦେଇଛି ।

ସିଦ୍ଧାର୍ଥ ଥରେ ଆକାଶକୁ ଅନାଇଲା । ତାହାର ମୁଖ ପ୍ରସନ୍ନ ହାସ୍ୟରେ ଉଜ୍ଜ୍ୱଳ ହେଲା । ଦୀର୍ଘ ସ୍ୱପ୍ନ ପରେ ଜାଗରଣର ଏକ ପ୍ରବଳ ଅନୁଭୂତି ତାହାର ସର୍ବାଙ୍ଗରେ ଅସ୍ୱାଭାବିକ କମ୍ପନ ଜାତ କଲା । ତହୁଁ ସେ ବିନା ଦ୍ୱିଧାରେ ଦ୍ରୁତ ଗତିରେ ଚାଲିବାକୁ ଲାଗିଲା ।

ସେ ମନେ ମନେ ଭାବିଲା— ଆଉ ଆତ୍ମା କଥା ଭାବିବ ନାହିଁ, ସଂସାରର ଦୁଃଖ କଷ୍ଟ ଭୁଲି ଯିବ, ବେଦ ପାଠ ବନ୍ଦ କରିବ, ସନ୍ନ୍ୟାସ ବ୍ରତରେ ଆସ୍ଥା ନାହିଁ, କୌଣସି ଉପଦେଶ ଶୁଣିବ ନାହିଁ, ବ୍ୟକ୍ତିଗତ ଅଭିଜ୍ଞତା ଅର୍ଜିବା ପାଇଁ ଆଜିଠୁଁ ନିଜେ ହେବ ନିଜର ଗୁରୁ । ପୁଣି ସେ ଚଉଦିଗକୁ ଚାହିଁ ମନେ କଲା, ସତେ ଯେମିତି ସେ ପ୍ରଥମ ଥର ପାଇଁ ଏହି ଅପୂର୍ବ ରମଣୀୟ ଓ ରହସ୍ୟମୟ ପୃଥିବୀକୁ ଦେଖିଲା । ଆକାଶ, ନଦୀ, ବଣ ଓ ପର୍ବତର ବହୁ ରଙ୍ଗୀ ପ୍ରାକୃତିକ ଦୃଶ୍ୟ ମଧ୍ୟରେ ସେ ପଥ ଚାଲିଲା । ସେ ଖାଲି ଗୋଟାଏ ଧର୍ମର

ଉପଦେଶ ଶୁଣିଥିଲା, ଅନ୍ୟ କହିଛି କଥାକୁ କର୍ଣ୍ଣପାତ କରି ନ ଥିଲା, ନିର୍ବୋଧ ଓ ବଧୀର ଥିଲା । ସେ ପୃଥିବୀର ଓ ଜୀବନର ପୋଥି ପଢ଼ିବାକୁ ଯାଇ ବର୍ଣ୍ଣମାଳାକୁ ଉପେକ୍ଷା କରିଛି, ଦୃଶ୍ୟମାନ ଜଗତକୁ ମାୟା ବୋଲି ଉଡ଼ାଇ ଦେଇଛି ଏବଂ ନିଜର ଆଖି ଓ ଜିଭକୁ ବିଶ୍ୱାସ କରି ନାହିଁ ! ଆଜ ତାହାର ସେହି ଭୁଲ ଭାଙ୍ଗିଲା, ପ୍ରକୃତ ସିଦ୍ଧାର୍ଥର ଜନ୍ମ ହେଲା ।

ଭାବୁଁ ଭାବୁଁ ସେ ହଠାତ୍ ରହିଗଲା । ତାହାର ମନେ ହେଲା —ମୁଁ ଯାହା ଥିଲି ଆଉ ତାହା ନାହିଁ । ଏକ୍ଷଣି ମୁଁ ସନ୍ନ୍ୟାସୀ, କି ପୁରୋହିତ, କି ବ୍ରାହ୍ମଣ ନୁହେଁ । ଘରକୁ ଫେରି ଯାଇ ମୁଁ କଅଣ ପୁଣି ଅଧ୍ୟୟନ, ଯଜ୍ଞ, କିମ୍ବା ତପସ୍ୟା ଆରମ୍ଭ କରିବି ?

ତାହାର ସର୍ବାଙ୍ଗ ମୁହୂର୍ତ୍ତେ ହେମାଳ ହୋଇଗଲା । ସେ ଉପଲବ୍ଧି କଲା, ପୃଥିବୀରେ ସେ କେଡ଼େ ଏକାକୀ ଓ ନିଃସଙ୍ଗ । ଖୀତ ପକ୍ଷୀ ପରି ତାହାର ଚିତ୍ତ ଥରିଲା । ଏତେ ଦିନ ଯାଏ ସେ ଥିଲା ଜଣେ ଧାର୍ମିକ ବ୍ରାହ୍ମଣର ସନ୍ତାନ । ମାତ୍ର ବର୍ତ୍ତମାନ ସେ କେବଳ ପ୍ରବୁଦ୍ଧ ସିଦ୍ଧାର୍ଥ, ଯାହାର ନିଦ୍ରା ଭାଙ୍ଗିଛି ।

ସିଦ୍ଧାର୍ଥର ଆଖି ସାମନାରୁ ପୃଥିବୀ ହଜିଗଲା । ହତାଶାର ହିମ ପ୍ରବାହ ତାହାକୁ ଅଭିଭୂତ କଲା । ତଥାପି ସେହି ମୁହୂର୍ତ୍ତରେ ସେ ଏକାନ୍ତ ରୂପେ ନିଜ ଉପରେ ନିର୍ଭର କରି ଶକ୍ତ ହୋଇ ଠିଆ ହେଲା ।

ଏହାହିଁ ଜାଗରଣର ଶେଷ କମ୍ପନ, ନବ ଜନ୍ମର ଶେଷ ବେଦନା ଓ ବିକ୍ଷୋଭ ।

ହଠାତ୍ ସେ ପୁଣି ଚାଲିବାକୁ ଲାଗିଲା ଦ୍ରୁତ ଅସ୍ଥିର ଗତିରେ । ସେ ଆଉ ପଛକୁ ଫେରି ଚାହିଁଲା ନାହିଁ, ଆଗେଇ ଚାଲିଲା ।



ସିଦ୍ଧାର୍ଥର ଦୃଷ୍ଟିରେ ଏତେ ଦିନେ ପୃଥିବୀର ରୂପ ବଦଳି ଗଲା । ଅପରୂପ ସୌନ୍ଦର୍ଯ୍ୟରେ ସେ ମୁଗ୍ଧ ହେଲା— ପର୍ବତ ଓ ବଣରେ ସୂର୍ଯ୍ୟୋଦୟ, ରାତିରେ ନକ୍ଷତ୍ର ଖଚିତ ନୀଳ ଆକାଶରେ ଭାସମାନ ବଙ୍କିମ ଚନ୍ଦ୍ର, ବଉଦମାଳା, ଇନ୍ଦ୍ରଧନୁ, କୁଳୁକୁଳୁ ନିର୍ଝରଣୀ, ଫୁଲର ସମ୍ଭାର, ପତ୍ରରେ ଶିଶିର ବିନ୍ଦୁ, ଧାନ କ୍ଷେତରେ ପବନର ହିଲ୍ଲୋଳ, ପକ୍ଷୀର କାକଳି, ମଧୁପର ଗୁଞ୍ଜନ, ରଙ୍ଗ ବେରଙ୍ଗର ପ୍ରଜାପତି, ଫଳ ଭରା ଗଛ— ସବୁ କିଛୁହିଁ ସୁନ୍ଦର । ମେଷ ଦମ୍ପତିର ମିଳନ ଦୃଶ୍ୟ ସୁଦ୍ଧା ତାହାର ଦୃଷ୍ଟି ଏଡ଼ିଲା ନାହିଁ । ଏସବୁ ତ ଆଗରୁ ଥିଲା । କେବଳ ସିଦ୍ଧାର୍ଥ ନ ଥିଲା । ସେ ଆଖି ଖୋଲି କିଛୁ ଦେଖି ନ ଥିଲା । ଆଜି ସେ ଫେରି ଆସିଲା ନିଜ ଭିତରକୁ, ସଂସାରର ମଝିକୁ । ଆଜି ସେ ଏହି ଗଛ ପତ୍ର, ପଶୁ ପକ୍ଷୀ, ସୂର୍ଯ୍ୟ ଚନ୍ଦ୍ରଙ୍କ ସହିତ ଆତ୍ମୀୟତାର ସୂତ୍ରରେ ଆବଦ୍ଧ ହେଲା ।

ରାସ୍ତାରେ ଯାଉଁ ଯାଉଁ ଜେତାବନରେ ବୁଦ୍ଧଙ୍କ ଉପଦେଶ, ଗୋବିନ୍ଦ ସଙ୍ଗେ ବିଚ୍ଛେଦ ଓ ବୁଦ୍ଧଙ୍କ ସହିତ ଆଲୋଚନାର କଥା ସିଦ୍ଧାର୍ଥର ମନେ ପଡ଼ିଲା । ସମ୍ପୂର୍ଣ୍ଣ ଅର୍ଥ ନ ବୁଝି ସେତେବେଳେ ବୁଦ୍ଧଙ୍କୁ ସେ ଯେଉଁସବୁ କଥା କହିଥିଲା, ଏକ୍ଷଣି ସେସବୁର ଅର୍ଥ ଧୀରେ ଧୀରେ ତାହା ନିକଟରେ ପ୍ରକଟିତ ହେଲା । ନିଜର ସାଧନା ଦ୍ୱାରା ବୁଦ୍ଧ ଯେଉଁ ପ୍ରଜ୍ଞା ଲାଭ କରିଛନ୍ତି, ତାହା କାହାକୁ ଶିଖାଇ ହୁଏ ନାହିଁ । ତାହା ହେଉଛି ତାହାଙ୍କ ଅନ୍ତରର ଗୋପନ ଧନ । ସେହି ଦୁର୍ଲଭ ଅଭିଜ୍ଞତା ପ୍ରାପ୍ତିର ସଂକଳ୍ପରେ ସିଦ୍ଧାର୍ଥ ନୂତନ

ପଥରେ ଯାତ୍ରା ଆରମ୍ଭ କରିଛୁ । ଜୀବନର ଚରମ ଅର୍ଥ ଅନୁଭୂତି ଓ ଧ୍ୟାନର ପଛରେ ଲୁଚି ରହିଛି । ସେ ଏବେଣି କେବଳ ଆତ୍ମାର ଆଜ୍ଞା ପାଳନ କରିବ ଏବଂ ଯେଉଁଠି ବିବେକର ନିର୍ଦ୍ଦେଶ ପାଇବ, ସେଠାରେହିଁ ସେ ଅଟକିବ ।

ବୁଦ୍ଧତ୍ୱ ପ୍ରାପ୍ତିର ଶୁଭ କ୍ଷଣରେ ଗୌତମ କାହିଁକି ବୋଧି ବୃକ୍ଷ ମୂଳରେ ବସିଥିଲେ ? ସେ ଗୋଟିଏ ସ୍ୱର ଶୁଣି ପାରିଥିଲେ । ଆତ୍ମାର ଆଦେଶ ଶିରୋଧାର୍ଯ୍ୟ କରି ସେ ସେଠାରେ ବିଶ୍ରାମ ନେଇଥିଲେ । ଦେହର ପୀଡ଼ନ, ସ୍ନାନ, ଆହାର, ପ୍ରାର୍ଥନା, ନିଦ୍ରା, ସ୍ୱପ୍ନ ସବୁଥିରୁ ସେ ବିରତ ହୋଇଥିଲେ । ସେ ଆଉ କାହାରି ନିର୍ଦ୍ଦେଶକୁ କର୍ଣ୍ଣପାତ କରି ନ ଥିଲେ, କେବଳ ଅନ୍ତରର ଆହ୍ୱାନ ପାଇଁ ସର୍ବଦା ପ୍ରସ୍ତୁତ ହୋଇ ରହିଥିଲେ ।

ସେ ଦିନ ସିଦ୍ଧାର୍ଥ ନଦୀ ଘାଟରେ ଆସି ପହଞ୍ଚିଲା ଏବଂ ନାଉରିର କୁଟୀରରେ ଆଶ୍ରୟ ନେଲା । ରାତିରେ ସେ ସ୍ୱପ୍ନ ଦେଖିଲା : ବୌଦ୍ଧ ଭିକ୍ଷୁର ଗେରୁଆ ବସନ ପରିହିତ ଗୋବିନ୍ଦ ତାହା ଆଗରେ ଠିଆ ହୋଇ ପଚାରିଲା— ମୋତେ କାହିଁକି ଛାଡ଼ି ଦେଇ ଆସିଲ ? ସିଦ୍ଧାର୍ଥ ଗୋବିନ୍ଦକୁ ଦୁଇ ହାତରେ କୁଣ୍ଢାଇ ପକାଇ ଚୁମା ଦେଲା । କିନ୍ତୁ ପର ମୁହୂର୍ତ୍ତରେ ଗୋବିନ୍ଦ କୁଆଡ଼େ ମିଳାଇଗଲା ଏବଂ ଜଣେ ନାରୀ ତାହାର ବାହୁ ବନ୍ଧନରେ ଧରା ଦେଲା । ନାରୀର ଅଙ୍ଗବାସର ଅନ୍ତରାଳରୁ ପରିପୂର୍ଣ୍ଣ ସ୍ତନ ଦେଖା ଗଲା । ସିଦ୍ଧାର୍ଥ ସେହି ଅପରିଚିତାର ବକ୍ଷର ମଧୁର ପୀୟୂଷ ପ୍ରାଣ ଭରି ପାନ କଲା । ନିଦ ଭାଙ୍ଗିଗଲା ମାତ୍ରେ ସିଦ୍ଧାର୍ଥର ଦୃଷ୍ଟି ଯାଇ ପଡ଼ିଲା ନଦୀର ସ୍ରୋତ ଧାରା ଉପରେ । ଦୂରରୁ ଗୋଟିଏ ପେଚାର ଡାକ ଶୁଭିଲା ।

ରାତି ପାହିଲା । ସିଦ୍ଧାର୍ଥ ନାଉରିକୁ ନଦୀ ପାରି କରିବାକୁ ଅନୁରୋଧ କଲା । ପ୍ରଭାତ ସୂର୍ଯ୍ୟର କିରଣରେ ନଦୀର ବକ୍ଷ ଝଲସୁଥିଲା ।

ସିଦ୍ଧାର୍ଥ କହିଲେ— ଭାରି ସୁନ୍ଦର ଏ ନଦୀ ।

ନାଉରି ସମର୍ଥନ କଲା— ହଁ, ସତରେ ଭାରି ସୁନ୍ଦର । ମୁଁ କାନ ଖାଡ଼ି ତାହାର କୁଳକୁଳୁ ଧ୍ୱନି ଶୁଣେ ଏବଂ ତାହା ଠାରୁ ବରାବର କିଛି ନା କିଛି ଶିଖିବାକୁ ପାଏ ।

ସେପାରି ଘାଟରେ ବାଉଁଶ ଭେଲାରୁ ଓହ୍ଲାଇ ସିଦ୍ଧାର୍ଥ କହିଲେ — ଭାଇ, ତୁମକୁ ବହୁତ ଧନ୍ୟବାଦ । ପାରି କଉଡ଼ି ଦେବା ପାଇଁ ମୋ ଠାରେ କିଛି ନାହିଁ ।

ନାଉରି ନିରୁଦ୍‌ବେଗ କଣ୍ଠରେ କହିଲା— ତୁମକୁ ଦେଖିଲା କ୍ଷଣି ତ ମୁଁ ତାହା ବୁଝିଛି । ଯେବେ ସୁବିଧା ହେବ, ପାରି କଉଡ଼ି ଦେବ । ମୁଁ ନଦୀ ନିକଟରୁ ଶିଖିଛି, ସବୁ କିଛି ଫେରି ଆସେ । ସନ୍ନ୍ୟାସୀ, ତୁମେ ବି ଦିନେ ଫେରି ଆସିବ । ଅନୁରୋଧ, ଦେବ ଅର୍ଚ୍ଚନା ବେଳେ ମୋ ପାଇଁ ଟିକିଏ ପ୍ରାର୍ଥନା କରିବ ।

ଉଭୟେ ହାସ୍ୟ ମୁଖରେ ବିଦାୟ ଗ୍ରହଣ କଲେ । ନାଉରିର ସହୃଦୟ ବ୍ୟବହାରରେ ସିଦ୍ଧାର୍ଥ ଆନନ୍ଦିତ ହେଲେ । ଦି ପହରେ ସେ ଗୋଟିଏ ଗାଁରେ ଯାଇ ପହଞ୍ଚିଲେ । ରାସ୍ତାଟା ନଦୀର କଡ଼େ କଡ଼େ ଗ୍ଲାଲି ଯାଇଛି । ଜଣେ ତରୁଣୀ କୂଳରେ ଲୁଗା କାଚୁଥିଲା । ସିଦ୍ଧାର୍ଥ ତାହାକୁ ପଚାରିଲେ— ନଗରରେ ପହଞ୍ଚିବାକୁ ଆଉ କେତେ ବାଟ ରହିଲା ? ତରୁଣୀ ତାହାଙ୍କ ନିକଟକୁ ଉଠି ଆସିଲା ଏବଂ ସିଦ୍ଧାର୍ଥ ସହିତ କିଛି କ୍ଷଣ ଆଳାପ କଲା । ସେ ପଚାରିଲା— ସନ୍ନ୍ୟାସୀମାନଙ୍କୁ କିଅଣ ସତରେ ବଣରେ ନାରୀହୀନ ନିଃସଙ୍ଗ ଶଯ୍ୟାରେ ରାତି ବିତାଇବାକୁ ହୁଏ ? ଆଉ, ଟିକିଏ ଆଗେଇ ଆସି ତରୁଣୀ ନିଜର ବାମ ପାଦ ସିଦ୍ଧାର୍ଥର ଡାହାଣ ପାଦ ଉପରେ ରଖି ଏକ ମନୋ-ମୁଗ୍‌ଧକର ଇଙ୍ଗିତ କଲା । ସିଦ୍ଧାର୍ଥ ତରୁଣୀର ବକ୍ଷରେ ଗୋଟିଏ ଚୁମ୍ବା ଦେଲେ । ତାହାର ଅର୍ଦ୍ଧ ନିମୀଳିତ ନୟନରେ

କାମନାର ମିନତି ଦେଖି, ସିଦ୍ଧାର୍ଥର ଚିତ୍ତ ଚଞ୍ଚଳ ହେଲା ଏବଂ ତାହାର ସ୍ପନ୍ଦମାନ ପୌରୁଷ ଜାଗ୍ରତ ହେଲା । ସେ ନାରୀ ଆଡ଼କୁ ହାତ ବଢ଼ାଇ ଦେଲା ମାତ୍ରେ ଆତ୍ମାର ନିର୍ଦ୍ଦେଶ ଶୁଣି ପାରିଲେ— ନା, ଏପରି ନୁହେଁ । ତହୁଁ ତରୁଣୀର ଗାଲରେ କୋମଳ ସ୍ପର୍ଶ ବୁଲାଇ ଦେଇ ସିଦ୍ଧାର୍ଥ ଦ୍ରୁତ ପଦରେ ରାସ୍ତାର ବାଙ୍କରେ ବାଉଁଶ ବଣ ଭିତରେ ଅଦୃଶ୍ୟ ହେଲେ ।

ସନ୍ଧ୍ୟା ଆଗରୁ ସିଦ୍ଧାର୍ଥ ନଗରୀରେ ଯାଇ ପହଞ୍ଚିଲେ । ଗୋଟିଏ ମନୋରମ ଉଦ୍ୟାନ ପାଖ ଦେଇ ଯାଉ ଯାଉ ସିଦ୍ଧାର୍ଥ ଦେଖିଲେ, ଜଣେ ମହିଳା ଏକ କାରୁକାର୍ଯ୍ୟ ଖଚିତ ପାଲଙ୍କିରେ ବସି ଦାସ ଦାସୀଙ୍କ ବହନରେ ଚାଲିଛନ୍ତି । ତାହାର ଅପୂର୍ବ ସୌନ୍ଦର୍ଯ୍ୟ ଦେଖି ସିଦ୍ଧାର୍ଥ ଉତ୍ଫୁଲ୍ଲ ହେଲେ ଏବଂ ଥରେ ତାହା ଆଡ଼କୁ ଅନାଇ ଅଭିବାଦନ ଜଣାଇଲେ । ପବନରେ ଅଜଣା ସୁଗନ୍ଧର ସୁବାସ ଭାସି ଆସିଲା । ସଙ୍ଗେ ସଙ୍ଗେ ରୂପସୀ ରମଣୀ ସହାସ୍ୟରେ ମୁଣ୍ଡ ହଲାଇ ସ୍ୱୀକୃତି ଜଣାଇଲେ । ତା ପରେ ପାଲଙ୍କି ଉଦ୍ୟାନ ଭିତରେ ଅଦୃଶ୍ୟ ହୋଇଗଲା ।

ସିଦ୍ଧାର୍ଥ ଜଣକୁ ପଚାରି ବୁଝିଲେ, ସେହି ରମଣୀ ହେଉଛି ସୁପରିଚିତା ବାରାଙ୍ଗନା କମଳା । ତା ପରେ ସେ ନଗର ବୁଲି ଦେଖିଲେ ଏବଂ ନଦୀ ଘାଟରେ ବନ୍ଧା ହୋଇଥିବା ଗୋଟିଏ ନୌକାରେ ରାତିଟି କଟାଇଲେ । ସକାଳେ ବାରିକ ଠାରୁ କ୍ଷୌର ହୋଇ ଏବଂ ନଦୀରେ ଗାଧୋଇ ସେ ବେଶ୍ ପରିଷ୍କାର ପରିଚ୍ଛନ୍ନ ହେଲେ ।

ଅପରାହ୍ନରେ ସିଦ୍ଧାର୍ଥ ଉଦ୍ୟାନର ପ୍ରବେଶ ପଥରେ ଯାଇ ଠିଆ ହେଲେ । ପୂର୍ବ ପରି କମଳା ପାଲଙ୍କିରେ ବସି ଆସିଲେ । ସିଦ୍ଧାର୍ଥ ତାହାକୁ ଅଭିବାଦନ ଜଣାଇଲେ । ପ୍ରତ୍ୟଭିବାଦନ ମଧ୍ୟ ମିଳିଲା । କମଳା

ସହିତ ଦେଖା କରିବା ପାଇଁ ସେ ଖବର ପଠାଇଲା । ଜଣେ ଭୃତ୍ୟ ଆସି ତାହାକୁ ସଙ୍ଗେ ସଙ୍ଗେ ନେଇଗଲା ।

କମଳା ଲତା ମଣ୍ଡପରେ ବସିଥିଲା । ସିଦ୍ଧାର୍ଥକୁ ଦେଖି ସେ ପଚାରିଲା— କାଲି ତୁମେ ମୋତେ ନମସ୍କାର କରିଥିଲ ନା ?

ହଁ ।

କିନ୍ତୁ କାଲି ତ ତୁମର ଦାଢ଼ି ଓ ଜଟା ଥିଲା ?

କାଲି ତୁମେ ସନ୍ନ୍ୟାସୀ ସିଦ୍ଧାର୍ଥକୁ ଦେଖିଥିଲ । ଏବେ ସନ୍ନ୍ୟାସ ତ୍ୟାଗ କରି ନଗରରେ ପ୍ରବେଶ କରିବା ଆଗରୁ ସର୍ବ ପ୍ରଥମେ ମୋର ତୁମ ସହିତ ଦେଖା ହେଲା । ତୁମେହିଁ ମୋ ଜୀବନରେ ପ୍ରଥମ ନାରୀ, ଯାହା ସହିତ ମୁଁ ଆଖି ନତ ନ କରି କଥା କହୁଛି ।

ମୟୂର ପଙ୍ଖାରେ ବିଞ୍ଚି ହେଉ ହେଉଁ କମଳା ହସି ହସି ପଚାରିଲା — ଖାଲି ଏହି କଥା ପଦକ କହିବାକୁ ଆସିଛ ?

ହଁ, ଆଉ ଆସିଛି ତୁମର ଅନିନ୍ଦ୍ୟ ସୌନ୍ଦର୍ଯ୍ୟ ପାଇଁ ଅଭିନନ୍ଦନ ଜଣାଇବାକୁ । କମଳା, ମୋର ଗୋଟିଏ ଅନୁରୋଧ ରଖିବ ? ଯେଉଁ ବିଦ୍ୟାରେ ତୁମେ ପାରଦର୍ଶିନୀ, ସେଥିରେ ମୋର ଗୁରୁ ହେବ କି ?

କମଳା ଉଚ୍ଚ ସ୍ୱରରେ ହସିଲା— ଅରଣ୍ୟରୁ ସନ୍ନ୍ୟାସୀ ଆସିଛି ମୋର ଛାତ୍ର ହେବାକୁ ! ଏହା ମୁଁ କେବେ କଳ୍ପନା କରି ନ ଥିଲି । ମୋ ନିକଟକୁ ଆସନ୍ତି ଯୁବକମାନେ ମୂଲ୍ୟବାନ ପୋଷାକ ପିନ୍ଧି ଓ ଟଙ୍କା ଥଳି ଧରି ।

ସିଦ୍ଧାର୍ଥ କହିଲା— କାଲି ମୁଁ ତୁମ ଠାରୁ ଯାହା ଶିଖିଲି, ତାହାର ଫଳରେ କ୍ଷୌର ହୋଇଛି, ମୁଣ୍ଡରେ ତେଲ ମାଖିଛି, ସଯତ୍ନରେ କେଶ ବିନ୍ୟାସ କରିଛି । ତାହା ତୁଳନାରେ ପୋଷାକ ଓ ଟଙ୍କା କିଛି ନୁହେଁ । ମୁଁ ପ୍ରତିଜ୍ଞା କରୁଛି, ତୁମର ବନ୍ଧୁତା ଲାଭ

କରିବ ଏବଂ ତୁମ ଠାରୁ ପ୍ରେମର କଳା ଶିଖିବ । ଦେଖିବ, ମୁଁ ନିଶ୍ଚୟ ତୁମର ଜଣେ ଉପଯୁକ୍ତ ଛାତ୍ର ହେବ ।

ନା, ତୁମେ ଏଯାଏ ଯଥେଷ୍ଟ ଯୋଗ୍ୟତା ହାସଲ କରି ନାହିଁ । ତୁମର ଦରକାର ଦାମିକା ପୋଷାକ, ଚକଚକିଆ ଜୋତା, ପ୍ରଚୁର ଅର୍ଥ, ଆଉ ମୋ ପାଇଁ ବିବିଧ ଉପହାର । ବୁଝିଲ ତ ?

ତୁମ କଥା ନ ବୁଝିବାରେ କିଛି କାରଣ ନାହିଁ । ତୁମ ମୁଖ ସଦ୍ୟ କଟା ହୋଇଥିବା ଡିମିରି ଫଳ ପରି ଦିଶୁଛି । ମୋ ମୁଖ ମଧ ରକ୍ତିମ ଓ ସରସ । ବନବାସୀ ସନ୍ନ୍ୟାସୀଙ୍କୁ ଦେଖି ତୁମର କଅଣ ଟିକିଏ ଭୟ ହେଉ ନାହିଁ ?

କାହିଁକି ? ସେ ରମଣୀ ସମ୍ବନ୍ଧରେ କଅଣ ବା ଜାଣେ ?

ସେ ତୁମ ଉପରେ ବଳ ପ୍ରୟୋଗ କରି ପାରେ, ଆଉ ତୁମର ଧନ ରତ୍ନ ଲୁଟି ନେଇ ଯାଇ ପାରେ ।

ମୋର ଆଦୌ ଭୟ ନାହିଁ । କାରଣ ମୋ ଠାରୁ କେହି ବଳ ପୂର୍ବକ ପ୍ରେମର ସୁଧା ହରି ନେଇ ପାରିବ ନାହିଁ । ପ୍ରେମ ଭିକ୍ଷା କଲେ ମିଳି ପାରେ, ଅର୍ଥ କିମ୍ବା ଉପହାର ଦେଇ କିଣି ହୁଏ, ମାତ୍ର ତାହାକୁ କେହି କେବେ ଚୋରି କରି ନ ପାରେ ।

ସିଦ୍ଧାର୍ଥ ସ୍ୱୀକାର କଲ— ତୁମେ ଠିକ୍ କହୁଛ, କମଳା । ଯେଉଁ ଦିନ ଉପଯୁକ୍ତ ପୋଷାକ, ଜୋତା ଓ ଅର୍ଥ ସଂଗ୍ରହ କରି ପାରିବ, ସେହି ଦିନ ମୁଁ ପୁଣି ତୁମ ଠାକୁ ଆସିବ । ଅଚ୍ଛା, ତୁମେ ମୋତେ ଟିକିଏ ପରାମର୍ଶ ଦେବ ?

କାହିଁକି ନ ଦେବ ?

ଏହି ତିନୋଟି ଜିନିସ କିପରି ମୁଁ ଯଥା ଶୀଘ୍ର ପାଇ ପାରିବ ?

ନିଜର ବିଦ୍ୟା ଦ୍ୱାରା ।

ମୁଁ ଧ୍ୟାନ, ଉପବାସ ଓ ଅପେକ୍ଷା କରି ପାରେ ।

ଆଉ କଣ୍ଟ କରୁଁ ?

କବିତା ରଚନା କରି ପାରେ । ଗୋଟିଏ କବିତାର ବିନିମୟରେ ତୁମେ ମୋତେ ଚୁମା ଦେବ ?

ନିଶ୍ଚୟ ଦେବି, ଯଦି ତୁମ କବିତା ମୋତେ ଭଲ ଲାଗିବ ।

ତହୁଁ ସିଦ୍ଧାର୍ଥ ସଙ୍ଗେ ସଙ୍ଗେ ଗୋଟିଏ ସ୍ୱରଚିତ କବିତା ଆବୃତ୍ତି କଲା ।

ଆବୃତ୍ତି ସରିଲା ମାତ୍ରେ କମଳା ହାତରେ ତାକୁ ମାରି ସିଦ୍ଧାର୍ଥକୁ ପାଖକୁ ଟାଣି ଆଣିଲା । ଗୋଟିଏ ମୁଖ ଆଉ ଗୋଟିଏ ମୁଖ ଉପରକୁ ଆସିଲା । କମଳାର ଏକ ଗଭୀର ଚୁମ୍ବନ ମୁଦ୍ରାଙ୍କ ଭିତରେ ତାହାକୁ ଅଭିଭୂତ କଲା । ତା ପରେ ଆଉ ଏକ ଚୁମ୍ବନର ମାଳା । ପ୍ରତ୍ୟେକ ଚୁମ୍ବନର ସ୍ୱାଦ ଭିନ୍ନ, ଅନୁଭୂତି ନୂତନ । ସିଦ୍ଧାର୍ଥ ଟିକିଏ ଦୁଲୁଗଲା ।

କମଳା କହିଲା— ତୁମ କବିତା ମୋତେ ଭାରି ଭଲ ଲାଗିଲା । ମୋର ଯଥେଷ୍ଟ ଟଙ୍କା ଥିଲେ, ମୁଁ ତୁମକୁ ନିଶ୍ଚୟ ଏହାର ମୂଲ୍ୟ ଦେଇ ଥାଆନ୍ତି । କବିତା ଲେଖି ତୁମେ ବିଶେଷ ଟଙ୍କା ପାଇ ପାରିବ ନାହିଁ । କମଳାର ବନ୍ଧୁତା ପାଇବାକୁ ହେଲେ, ତୁମକୁ ଅନେକ ଟଙ୍କା ଦେବାକୁ ପଡ଼ିବ । ହଁ, ତୁମେ ଏକ୍ଷଣି କଅଣ କରିବ ? ଧ୍ୟାନ, ଉପବାସ ଓ କବିତା ଛଡ଼ା ତୁମେ କଅଣ ଆଉ କିଛି କରି ପାରିବ ନାହିଁ ?

ମୁଁ ଯଜ୍ଞର ଗୀତ ଓ ଯାଦୁ ମନ୍ତ୍ର ଜାଣେ, ଶାସ୍ତ୍ର ବି ଅଧ୍ୟୟନ କରିଛି ।

ତୁମେ ଲେଖି ପଢ଼ି ଜାଣ ?

ନିଶ୍ଚୟ ।

ଖୁବ୍ ଭଲ କଥା ।

ଠିକ୍ ସେତିକ ବେଳେ ଜଣେ ଭୃତ୍ୟ ଆସି କମଳାର କାନରେ କଅଣ କହିଲା । କମଳା ବ୍ୟସ୍ତ ହୋଇ କହିଲା— ସିଦ୍ଧାର୍ଥ, ମୋର ଜଣେ ଅତିଥି ଆସିଛନ୍ତି । ତୁମେ ଶୀଘ୍ର ଏଠାରୁ ଲୁଚି ପଳାଅ, ପୁଣି କାଲି ତୁମ ସହିତ ଦେଖା ହେବ ।

ସିଦ୍ଧାର୍ଥ ପାନ୍ଥଶାଳାର ଏକ କୋଣରେ ଆସି ଠିଆ ହେଲା ଏବଂ ନୀରବରେ ଖାଦ୍ୟ ପାଇଁ ନିବେଦନ କଲା । ତାହାକୁ ଖାଦ୍ୟ ଦିଆ ହେଲା । ସିଦ୍ଧାର୍ଥ ମନେ ମନେ ଭାବିଲା, ସେ ତ ଆଉ ସନ୍ନ୍ୟାସୀ ନୁହେଁ, ଏବେ ତାହା ପକ୍ଷରେ ଭିକ୍ଷା ଶୋଭନୀୟ ନୁହେଁ । ତହୁଁ ସେ ଭାତ ଥାଳିଟା କୁକୁର ଆଡ଼କୁ ଠେଲି ଦେଇ ଉପବାସ ରହିଲା ।

ପର ଦିନ ସିଦ୍ଧାର୍ଥ କମଳାର ଘରେ ଯାଇ ଉପସ୍ଥିତ ହେଲା । କମଳା ତାହାକୁ କହିଲା— ଗୋଟିଏ ସୁସମ୍ବାଦ ଅଛି । ମୁଁ କାମସ୍ୱାମୀ ଠାକୁ ଖବର ଦେଇଛି । ସେ ତୁମକୁ ଅପେକ୍ଷା କରିଥିବ । ତାହାକୁ ଖୁସି କରି ପାରିଲେ ତୁମେ ସେଠାରେ ଭଲ ଚାକିରିଟିଏ ପାଇବ । ସେ ହେଉଛି ନଗରରେ ସବୁ ଠାରୁ ଧନୀ ବଣିକ ।

ସିଦ୍ଧାର୍ଥ ହସି ହସି ତାହାକୁ କୃତଜ୍ଞତା ଜଣାଇଲା । ସେ ଦୁଇ ଦିନ ହେଲା ଅନାହାରରେ ଥିବାର ଜାଣି, କମଳା ତୁରନ୍ତ ଖାଦ୍ୟ ଅଣାଇ ତାହାକୁ ସଯତ୍ନରେ ଖୁଆଇଲା ।

ବିଦାୟ ନେଲା ବେଳେ କମଳା ସିଦ୍ଧାର୍ଥକୁ କହିଲା— ତୁମର ଭାଗ୍ୟ ଭଲ । ଗୋଟିଏ ପଥରୁ ଅନ୍ୟ ପଥ ତୁମ ପାଇଁ ଉନ୍ମୁକ୍ତ ହେଲା । କିନ୍ତୁ କିପରି ତାହା ସମ୍ଭବ ହେଲା ?

କାଲି ତୁମକୁ କହିଥିଲି ପରା ମୁଁ ଚିନ୍ତା, ଅପେକ୍ଷା ଓ ଉପବାସ ଜାଣେ । ତୁମେ ହସି ଉଡ଼ାଇଦେଲ । କିନ୍ତୁ ଦେଖିବ, ସେଗୁଡ଼ିକର ମଧ୍ୟ ପ୍ରୟୋଜନ ଅଛି ।

କମଳା ତାହା ସ୍ୱୀକାର କରି ପଚାରିଲା— ମୁଁ ନ ଥିଲେ, ତୁମର ଦଶା ଆଜି କଅଣ ହୋଇ ଥାଆନ୍ତା ?

ତୁମ୍ ଉଦ୍ୟାନକୁ ଆସିବା ହେଲା ମୋର ପ୍ରଥମ ପାହାଚ । ଜାଣିଥିଲି, ତୁମେ ମୋତେ ସାହାଯ୍ୟ କରିବ ।

ଯଦି ମୁଁ ସାହାଯ୍ୟ କରିବାକୁ ଚାହିଁ ନ ଥାଆନ୍ତି ?

କିନ୍ତୁ ତୁମେ ତ ଚାହିଁଛ । ମୁଁ କିଛି କରେ ନାହିଁ, ଖାଲି ଅପେକ୍ଷା, ଧ୍ୟାନ ଆଉ ଉପବାସ କରେ । ମୋର ଲକ୍ଷ୍ୟ ମୋତେ ଆକର୍ଷଣ କରୁଛି ।

କମଳା ନୀରବରେ ସିଦ୍ଧାର୍ଥର କଥା ଶୁଣିଲା । ତାହାର ଭସା ଭସା ସ୍ନିଗ୍ଧ ଚାହାଣି କମଳାକୁ ଖୁବ ଭଲ ଲାଗିଲା । ସେ ମୃଦୁ କଣ୍ଠରେ କହିଲା— ହୁଏତ ତୁମ କଥା ସତ । ତୁମେ ଭାଗ୍ୟବାନ ବୋଲି ତୁମ ପକ୍ଷରେ ସିଦ୍ଧି ଲାଭ ସହଜ ବୋଧ ହୁଏ ।

ତାହାହିଁ ହେଉ— କହି ସିଦ୍ଧାର୍ଥ କମଳାକୁ ଚୁମା ଦେଇ ବିଦାୟ ନେଲା ।

## ୭

ସିଦ୍ଧାର୍ଥ ବଣିକ କାମସ୍ୱାମୀ ସହିତ ତାହାର ପ୍ରାସାଦରେ ସାକ୍ଷାତ କଲା । ବଣିକ ତାହାକୁ ପଚାରିଲା— ଶୁଣିଲି ଆପଣ ଜଣେ ବ୍ରାହ୍ମଣ ଓ ପଣ୍ଡିତ, ମାତ୍ର ଚାକିରି ପାଇଁ ମୋ ପାଖକୁ ଆସିଛନ୍ତି । ଆପଣଙ୍କର ଅଭାବ କଅଣ ?

ସିଦ୍ଧାର୍ଥ ଜବାବ ଦେଲା— ମୋର ଏବେ କିଛି ଅଭାବ ନାହିଁ, କି ଆଗେ ବି ନ ଥିଲା । ମୁଁ ସ୍ୱେଚ୍ଛାରେ ରିକ୍ତ ହୋଇଛି ।

ନିଃସ୍ୱ ହେଲେ ବଞ୍ଚିବେ କପରି ?

ତାହା କେବେ ହେଲେ ଭାବି ନାହିଁ ।

ତାହା ହେଲେ ଅନ୍ୟର ସମ୍ପତ୍ତି ଉପରେ ଜୀବନ ଧାରଣ କରିଛନ୍ତି ?

ବୋଧ ହୁଏ । ବଣିକମାନେ ତ ଅନ୍ୟର ସମ୍ପତ୍ତି ଉପରେ ବଞ୍ଚନ୍ତି ।

ସେମାନେ ବିନିମୟରେ ପଣ୍ୟ ସାମଗ୍ରୀ ଦିଅନ୍ତି ।

ଦୁନିଆରେ ତାହାହିଁ ନିୟମ । ଜୀବନଟା ହେଉଛି ଦେବାନେବାର କାରବାର ।

ଆପଣ କଅଣ ଦେଇ ପାରନ୍ତି ?

ମୁଁ ଚିନ୍ତା କରି ପାରେ, ଅପେକ୍ଷା କରି ପାରେ, ଆଉ ଉପବାସ ରହି ପାରେ ।

ଏସବୁର ଫଳ କଅଣ ?

ଖାଦ୍ୟ ନ ଥିଲେ ସବୁ ଠାରୁ ବେଶି ବୁଦ୍ଧିର କାର୍ଯ୍ୟ ହେଉଛି ଉପବାସ ରହିବା । ସୁତରାଂ ଉପବାସର ପ୍ରୟୋଜନ ଅଛି ।

ଆପଣଙ୍କ କଥା ଯଥାର୍ଥ—କାମସ୍ୱାମୀ କହିଲା । ତା ପରେ ତାହାର ଲେଖା ଓ ପଢ଼ାରେ ସନ୍ତୁଷ୍ଟ ହୋଇ, ସେ ସିଦ୍ଧାର୍ଥକୁ ତାହାର ଅତିଥ୍ୟ ଗ୍ରହଣ କରିବାକୁ ଆମନ୍ତ୍ରଣ କଲା ।

ବଣିକର ଗୃହରେ ସିଦ୍ଧାର୍ଥର ନୂତନ ଜୀବନ ଆରମ୍ଭ ହେଲା । ତାହାକୁ ନୂତନ ପୋଷାକ ଓ ଜୋତା ଦିଆଗଲା । ଦିନରେ ଦୁଇ ଥର ଖାଦ୍ୟ ଦିଆ ହେଲେ ସୁଦ୍ଧା ସେ କେବଳ ଥରେ ଭୋଜନ କଲା, ମାଂସ ଓ ମଦ ଛୁଇଁଲା ନାହିଁ । କାମସ୍ୱାମୀ ତାହାକୁ ନିଜର ପଣ୍ୟ ସାମଗ୍ରୀ, ଗୋଦାମ ଘର ଓ ହିସାବପତ୍ର ଦେଖାଇଲା ଏବଂ ତାହା ସହିତ ବ୍ୟବସାୟ ସମ୍ବନ୍ଧରେ ଆଲୋଚନା କଲା । କମଳାଙ୍କ

ଉପଦେଶ ମନେ ରଖି ସେ ନିଜକୁ କଦାପି କାମସ୍ୱାମୀର ଅଧୀନସ୍ଥ କର୍ମଚାରୀ ବୋଲି ଭାବିଲା ନାହିଁ ।

କିଛି ଦିନ ଭିତରେ ସିଦ୍ଧାର୍ଥ ବ୍ୟବସାୟର ପରିଚାଳନାରେ ମୁଖ୍ୟ ଅଂଶ ଗ୍ରହଣ କଲା । କମଳା ସମୟ ଠିକ୍ କରି ଦେଇଥିଲା । ଚିତ୍ତ ବିନୋଦନ ପାଇଁ ସେହି ନିର୍ଦ୍ଦିଷ୍ଟ ସମୟରେ ସେ ସୁନ୍ଦର ପୋଷାକ ଓ ନୂଆ ଜୋତା ପିନ୍ଧି କମଳାର ଘରକୁ ଯାଉଥିଲା । ହାତରେ ଟଙ୍କା ପଡ଼ିଲାରୁ, ସେ କମଳାକୁ ନୂଆ ନୂଆ ସାମଗ୍ରୀ ସବୁ କିଣି ନେଇ ଉପହାର ଦେଲା । ସେ କମଳା ଠାରୁ ଶିଖିଲା— ଆନନ୍ଦ ନ ଦେଲେ ଆନନ୍ଦ ମିଳେ ନାହିଁ, ଦେହର ପ୍ରତି ଅଙ୍ଗ ହେଉଛି ଆନନ୍ଦ ଦେବାର ଗୋପନ ଉତ୍ସ, ଦୟିତା ନିକଟରେ ପରାଜୟ ସ୍ୱୀକାର କରିବାକୁ ହୁଏ ଏବଂ କେତେ ବେଳେ ବିଜୟୀ ବେଶରେ ତାହା ସମକ୍ଷରେ ଉପସ୍ଥିତ ହେବାକୁ ପଡ଼େ, ବୈଚିତ୍ର୍ୟର ଅଭାବରେ ପ୍ରେମର ମୃତ୍ୟୁ ହୁଏ । ବର୍ତ୍ତମାନ ସିଦ୍ଧାର୍ଥ କମଳାର ଗୁରୁ, ପ୍ରେମିକ ଓ ବନ୍ଧୁ । ସୁନ୍ଦରୀ ବାରାଙ୍ଗନାର ପ୍ରଣୟରେ ତାହାର ଜୀବନର ଅର୍ଥ ଓ ମୂଲ୍ୟ ନିହିତ ।

ବଣିକ କାମସ୍ୱାମୀ ସିଦ୍ଧାର୍ଥକୁ ତାହାର ଦରକାରୀ ଚିଠିପତ୍ର ଲେଖିବାର ଦାୟିତ୍ୱ ଦେଲା ଏବଂ ସମସ୍ତ ପ୍ରୟୋଜନୀୟ ବିଷୟରେ ତାହା ସହିତ ପରାମର୍ଶ କରିବାକୁ ଲାଗିଲା । ବ୍ୟବସାୟ ବାଣିଜ୍ୟରେ ସିଦ୍ଧାର୍ଥର ମନ ନ ଥିଲା । ସେଥି ପ୍ରତି ତାହାର ଆଗ୍ରହ ବଢ଼ାଇବା ନିମନ୍ତେ କାମସ୍ୱାମୀ ତାହାକୁ ବ୍ୟବସାୟର ଲାଭ କ୍ଷତି ସହିତ ପ୍ରତ୍ୟକ୍ଷ ଭାବରେ ଜଡ଼ାଇଲା । ତଥାପି ସିଦ୍ଧାର୍ଥର କିଛି ପରିବର୍ତ୍ତନ ହେଲା ନାହିଁ । ଥରେ କୌଣସି ଗ୍ରାମରୁ ଚାଉଳ କିଣା କାରବାରରେ ସିଦ୍ଧାର୍ଥ ଅର୍ଥ ଓ ସମୟର ଅପବ୍ୟୟ କରିଥିବା ହେତୁ, କାମସ୍ୱାମୀ ତାହାକୁ ତିରସ୍କାର କଲା । ସିଦ୍ଧାର୍ଥ ଜବାବ ଦେଲା— ବନ୍ଧୁ,

ତିରସ୍କାର ଦ୍ୱାରା କିଛି ମହତ କାର୍ଯ୍ୟ ସାଧିତ ହୁଏ ନାହିଁ ।
ଲୋକସାନ ତକ ମୁଁ ଏକା ବନ୍ଧନ କରିବି । ଏଥର ମୋର ଭ୍ରମଣ
ବେଶ୍ ଭଲ ହେଲା । ମୋତେ ତିରସ୍କାର କରି ତୁମେ ଦୁଃଖ ପାଅ
ନାହିଁ । ଯଦି କେବେ ତୁମେ ମନେ କର ଯେ ମୁଁ ତୁମର କ୍ଷତି କଲି,
ତାହା ହେଲେ ମୋତେ ସେହି କଥା ଜଣାଇ ଦେଲେ ମୁଁ ତତ୍କ୍ଷଣାତ
ନିଜର ରାସ୍ତା ଧରିବି ।

ସିଦ୍ଧାର୍ଥ ନିକଟକୁ ସକଳ ଶ୍ରେଣୀର ଲୋକଙ୍କର ଅବାରିତ
ପ୍ରବେଶ ଥିଲା— ବଣିକ, ଦେଣାଦାର, ଭିକ୍ଷୁକ, ବାଳକ, ବୃଦ୍ଧ
ବିକାଳି, ଇତ୍ୟାଦି । ସମସ୍ତଙ୍କ ସହିତ ସେ ସମାନ ବ୍ୟବହାର
କରୁଥିଲା । କାମସ୍ୱାମୀର ବ୍ୟବସାୟ ସଂକ୍ରାନ୍ତ ବିରୂପ ସମାଲୋଚନା
ମଧ୍ୟ ସେ ମନ ଦେଇ ଶୁଣୁଥିଲା । ତାହା ନିକଟକୁ ଅନେକ ଲୋକ
ଆସୁଥିଲେ— ବ୍ୟବସାୟ ପାଇଁ, ପ୍ରତାରଣା କରିବାକୁ, ତାହାର କଥା
ଶୁଣିବାକୁ, ସହାନୁଭୂତି ସକାଶେ, କିମ୍ବା ଉପଦେଶ ନେବାକୁ ।
ମଣିଷର ଏହି ବିଚିତ୍ର ଖେଳରେ ସେ ବୁଡିଗଲା । ଚଉଦିଗର ବ୍ୟବସାୟ
ଓ ମଣିଷଙ୍କୁ ନେଇ ସେ ଗୋଟିଏ ନୂଆ ଖେଳ ଖେଳୁଥିଲା ସତ, ମାତ୍ର
ଏସବୁଥିରେ ତାହାର ପ୍ରକୃତ ଆତ୍ମା ନ ଥିଲା । ତାହା ବହୁ ଦୂରରେ
ଅଦୃଶ୍ୟ ହୋଇ ଘୂରି ବୁଲୁଥିଲା ।

ସେ ନିୟମିତ ଭାବରେ କମଳାର ଘରକୁ ଯାଉଥିଲା,
ତାହା ସହିତ ଗପ କରୁଥିଲା, ନୂଆ ନୂଆ କଥା ଶିଖୁଥିଲା । ଉଭୟେ
ପରସ୍ପରର ଉପଦେଶ ଗ୍ରହଣ କରୁଥିଲେ । ସେ କମଳା ଠାରୁ ପ୍ରେମର
କଳା ଶିଖିଲା ।

ଦିନେ ସିଦ୍ଧାର୍ଥ କମଳାକୁ କହିଲା— ତୁମ ଭିତରେ ମୋର ଗୁପ୍ତ
ଦେଖି ପାରୁଛି । ତୁମେ ଅନନ୍ୟା । ତୁମ ମନର କୋଣରେ ଗୋଟିଏ
ମନ୍ଦିର ଅଛି ! ଯେତେ ବେଳେ ତୁମେ ଏକା ରହିବାକୁ ଚାହଁ, ଠିକ୍

ମୋର ଘର ତାହା ଭିତରେ ପ୍ରବେଶ କର । ଖୁବ୍ କମ ଲୋକଙ୍କର ଏମିତି କ୍ଷମତା ଅଛି ।

ସମସ୍ତଙ୍କର ବୁଦ୍ଧି ତ ସମାନ ନୁହେଁ ।

କମଳା, ବୁଦ୍ଧି ସାଙ୍ଗରେ ଏହାର କିଛି ସମ୍ବନ୍ଧ ନାହିଁ । କାମସ୍ୱାମୀ ବୁଦ୍ଧିରେ ମୋ ସମକକ୍ଷ, ମାତ୍ର ତାହାର ମନ ଭିତରେ ତ କୌଣସି ମନ୍ଦିର ନାହିଁ । ଅଧିକାଂଶ ମଣିଷ ଝଡ଼ା ପତ୍ର ପରି ପବନରେ ଉଡ଼ି ବୁଲନ୍ତି । ଅଳ୍ପ କେତେ ଜଣ ଆକାଶରେ ନକ୍ଷତ୍ର ପରି ନିର୍ଦ୍ଦିଷ୍ଟ କକ୍ଷ ପଥରେ ଗତିଲନ୍ତି । ମୁଁ ଶ୍ରେଷ୍ଠ ଜ୍ଞାନୀ ପୁରୁଷ ମହାଭିକ୍ଷୁ ଗୌତମଙ୍କୁ ଦେଖିଛି । ମୁଁ କଦାପି ତାହାଙ୍କ କଥା ପାଶୋରି ପାରିବି ନାହିଁ । ସେ ବୁଲି ବୁଲି ଧର୍ମ ପ୍ରଚାର କରୁଛନ୍ତି ।

ପୁଣି ଶ୍ରମଣ ଜୀବନର ଚିନ୍ତା ତୁମକୁ ଆଚ୍ଛନ୍ନ କଲା କି !

ସିଦ୍ଧାର୍ଥ କିଛି ଜବାବ ଦେଲା ନାହିଁ । ଆରମ୍ଭ ହେଲା ପ୍ରେମର ଖେଳ । ଶିକାରୀର ଧନୁ ଓ ସାରସର ଗ୍ରୀବା ପରି ନମନୀୟ କମଳାର ଦେହ । ସେ ତିରିଶ ଚାଳିଶ ରକମ ଖେଳ ଜାଣିଥିଲା । ତାହା ଭିତରୁ ଗୋଟିଏ ସେ ସିଦ୍ଧାର୍ଥ ସହିତ ଖେଳିଲା, ତାହାକୁ ଅଭିଭୂତ ଓ ଜୟ କଲା । ପରାଜିତ ଅବସନ୍ନ ସିଦ୍ଧାର୍ଥ କମଳାର ପାଖରେ ପଡ଼ି ରହିଲା ।

କମଳା ନଇଁ ପଡ଼ି କିଛି କ୍ଷଣ ସିଦ୍ଧାର୍ଥର କ୍ଲାନ୍ତ ମୁହଁକୁ ଅନାଇ ଚକିତ ସ୍ୱରରେ କହିଲା— ତୁମେ ମୋର ଶ୍ରେଷ୍ଠ ପ୍ରେମିକ । ତୁମେ ସମସ୍ତଙ୍କ ଠାରୁ ଶକ୍ତିଶାଳୀ । ତୁମେ ମୋ ବିଦ୍ୟା ଭଲ ଭାବରେ ଶିଖିଛ । ଦିନେ ତୁମ ପୁଅ ମୋ କୋଳକୁ ଆସିବ । ତୁମେ ସତରେ ମୋତେ ଭଲ ପାଅ ନାହିଁ, କି ଆଉ କାହାକୁ ବି ନୁହେଁ ।

ଶ୍ରାନ୍ତ କଣ୍ଠରେ ସିଦ୍ଧାର୍ଥ ଜବାବ ଦେଲା— ହଁ, ସତ । ଠିକ୍ ତୁମରି ପରି । ତୁମେ ତ କାହାକୁ ଭଲ ପାଅ ନାହିଁ !

# ୭

ବର୍ଷ ପରେ ବର୍ଷ ବିତିଗଲା । ସ୍ୱଚ୍ଛନ୍ଦ ଜୀବନର ପ୍ରବାହ ଭିତରେ ଧନୀକ ସିଦ୍ଧାର୍ଥ ବୃଦ୍ଧ ରହିଲା । ନଦୀ କୂଳରେ ତାହାର ରମଣୀୟ ପ୍ରାସାଦ ଓ ମନୋରମ ଉଦ୍ୟାନ । ଗୌତମଙ୍କ ଧର୍ମ ଉପଦେଶ, ଗୋବିନ୍ଦର ବିଚ୍ଛେଦ ବେଦନା, ପରମ ବ୍ରହ୍ମର ପ୍ରକାଶ ପାଇଁ ଐକାନ୍ତିକ ଆଗ୍ରହ, ସବୁ କିଛି ଧୀରେ ଧୀରେ କେବଳ ତାହାର ସ୍ମୃତିରେ ପର୍ଯ୍ୟବସିତ ହେଲା । ଭଗବତ୍ ପ୍ରେରଣାର ଅସ୍ପଷ୍ଟ ସଙ୍ଗୀତ ବହୁ ଦୂରରୁ ଭାସି ଆସୁଥିଲା । ବର୍ତ୍ତମାନ କୁମ୍ଭକାରର ଚକ ପରି ସିଦ୍ଧାର୍ଥର ଅନ୍ତରରେ ସନ୍ନ୍ୟାସର, ଚିନ୍ତାର ଓ ବିଚାରର ଚକ ମନ୍ଥର ଗତିରେ ଘୂରୁଥିଲା । କୌଣସି ଏକ ଅଲକ୍ଷ୍ୟ ଛିଦ୍ର ପଥରେ ସଂସାର ଓ ଜଡ଼ତାରେ ତାହାର ଆତ୍ମା ଧୀରେ ଧୀରେ ଶରିକ୍ରାନ୍ତ ଓ ଶ୍ରାନ୍ତ ହେଉଥିଲା । ଅନ୍ୟ ପକ୍ଷରେ ତାହାର ଇନ୍ଦ୍ରିୟାନୁଭୂତି ଶିବ୍ରତର ହେଉଥିଲା ।

ସିଦ୍ଧାର୍ଥ ବ୍ୟବସାୟ ପରିଚାଳନା ଶିଖି ଗଲାଣି । ବର୍ତ୍ତମାନ ମୂଲ୍ୟବାନ ପୋଷାକ ପରିଧାନ; ସୁବାସ ଜଳରେ ସ୍ନାନ, ସୁମଧୁର ଆମିଷ ଆହାର, ସୁକୋମଳ ଶଯ୍ୟା, ସୁରାପାନ, ପଶା ଖେଳ ଓ ନାରୀ ସଙ୍ଗ ତାହାକୁ ଆଚ୍ଛନ୍ନ କରିଥିଲା । ତଥାପି ସେ ନିଜକୁ ଜନ ସାଧାରଣଙ୍କ ଠାରୁ ପୃଥକ ବୋଲି ମନେ କରୁଥିଲା ଏବଂ ସେମାନଙ୍କୁ ଈର୍ଷା କରୁଥିଲା । ଏବେ ବି ସିଦ୍ଧାର୍ଥର ମୁଖ ଓ ଆଖିରେ ବୁଦ୍ଧିର ଦୀପ୍ତି ଫୁଟିଉଠୁଥିଲା, କିନ୍ତୁ ତାହାର ସେହି ପୂର୍ବ ହାସ୍ୟ ଉଭେଇ ଯାଇଥିଲା । ଧନୀମାନଙ୍କ ପରି ସ୍ୱାଭାବିକ ଅସନ୍ତୋଷ, ଅସୁସ୍ଥତା,

ବିରକ୍ତି, ଆଳସ୍ୟ ଓ ପ୍ରୀତିହୀନତା ତାହାର ମୁଖରେ ପ୍ରକଟିତ ହେଲା ।

ଦିନକୁ ଦିନ ପଡ଼ଲା କୁହୁଡ଼ି ପରି ଶ୍ରାନ୍ତିର ଅବଗୁଣ୍ଠନ ସିଦ୍ଧାର୍ଥକୁ ଅଧିକ ଆଚ୍ଛନ୍ନ କଲା । ତାହାର ନୂତନ ଜୀବନ ଜୀର୍ଣ୍ଣ ହେବାକୁ ବସିଲା । ସଂସାର ସିଦ୍ଧାର୍ଥକୁ ଜାବୁଡ଼ି ଧରିଲା । ଶେଷ ଅବଧି ଅର୍ଥ ଓ ସମ୍ପତ୍ତିର ଶୃଙ୍ଖଳରେ ସେ ଆବଦ୍ଧ ହେଲା । ତାହାର ଅପରିତୃପ୍ତ ଅବସନ୍ନ ବିସ୍ୱାଦ ଜୀବନରେ ଏକମାତ୍ର ଜୁଆଖେଳ କ୍ଷଣିକ ସୁଖ ଓ ଉତ୍ତେଜନା ଆଣୁଥିଲା । ବ୍ୟବସାୟରେ ସେ ରୂଢ଼ ଓ ନୀଚ ହେଲା । ବାର୍ଦ୍ଧକ୍ୟର କୁତ୍ସିତ ଘୃଣ୍ୟ ତାହାର ମୁଖରେ ପ୍ରତିବିମ୍ବିତ ହେଲା । ଲଜ୍ଜା ଓ ଘୃଣା ତାହାକୁ ଅଭିଭୂତ କଲା । ସେହି ଘୃଣ୍ୟ ନିକଟରୁ ସେ ପଳାଇ ଯାଉଥିଲା ଜୁଆ ଖେଳ ଓ ସୁରା ପାନ ଭିତରକୁ । କିନ୍ତୁ କିଛି କ୍ଷଣ ପରେ ପୁଣି ଅର୍ଥର ମୋହ ତାହାର ମନରେ ଜାଗୁଥିଲା । ଏତାଦୃଶ ନିରର୍ଥକ ଆକର୍ଷଣ ଓ ବିକର୍ଷଣରେ ସେ ଦିନକୁ ଦିନ ବୃଦ୍ଧ ଓ ପୀଡ଼ିତ ହୋଇ ଯାଉଥିଲା ।

ଦିନେ ଅପରାହ୍ଣରେ ସିଦ୍ଧାର୍ଥ କମଳାର ମନୋରମ ପ୍ରମୋଦ ଉଦ୍ୟାନରେ ବସି ତାହା ସହିତ ଗପ କରୁଥିଲା । କମଳା ତାହା ଠାରୁ ଗୌତମଙ୍କ କଥା ଶୁଣୁଥିଲା— ତାଙ୍କର ଦୃଷ୍ଟି ସ୍ୱଚ୍ଛ, ମୁଖ ପ୍ରଶାନ୍ତ ମଧୁର, ହାସ୍ୟ କରୁଣ, କଥା ଓ କାର୍ଯ୍ୟରେ ଗମ୍ଭୀର ଶାନ୍ତି । ସିଦ୍ଧାର୍ଥର ତୁଣ୍ଡରୁ ଯେତେ ଶୁଣିଲେହେଁ,ସେ ତୃପ୍ତ ହେଉ ନ ଥିଲା । ବହୁ କ୍ଷଣ ଯାଏ ଗୌତମଙ୍କ କାହାଣୀ ଶୁଣି, କମଳା ଦୀର୍ଘଶ୍ୱାସ ଛାଡ଼ି କହିଲା—ହୁଏତ ଅଚିରେ ମୁଁ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରିବି । ଏହି ପ୍ରମୋଦ ଉଦ୍ୟାନ ତାହାଙ୍କୁ ଦାନ କରି ତାହାଙ୍କ ଠାରେ ଶରଣ ପଶିବି । ମାତ୍ର ପର ମୁହୂର୍ତ୍ତରେ ସେ ପ୍ରେମର ଖେଳରେ ବ୍ୟଗ୍ର ହୋଇ ଉତ୍ତପ୍ତ ଆଲିଙ୍ଗନରେ ପ୍ରେମିକକୁ ବନ୍ଦୀ କଲା । ପଳାୟନ ପର ଆନନ୍ଦର

ଶେଷ ମଦ୍ଯ ଚୋପାକ କମଳା ଅଜାଡ଼ି ନେବାକୁ ବସିଲା । କମଳାର ଦେହକୁ ଲାଗି ସିଦ୍ଧାର୍ଥ ଚୁପଚାପ ଶୋଇଥିଲା । ତାହାର ଆଖି ତଳେ କମଳାର ମୁଖ । ସେହି ମୁଖ ଆଡ଼କୁ ଚାହିଁ ସିଦ୍ଧାର୍ଥ ପ୍ରଥମ ଥର ପାଇଁ ଏକ ବିଷାଦର ଚିହ୍ନ ଲକ୍ଷ୍ୟ କଲା — ତାହାର ଆଖି ତଳେ ଓ ଅଧର କୋଣରେ ସୂକ୍ଷ୍ମ ଅଗଭୀର ରେଖା ପ୍ରାୟ ବାର୍ଦ୍ଧକ୍ୟର ଆଗମନ ଘୋଷଣା କରୁଥିଲା । ସିଦ୍ଧାର୍ଥ ଶୃଙ୍ଖଳରେ ପାଦ ଦେଲାଣି, କେତୋଟି ଧଳା କେଶ ଦେଖା ଗଲାଣି । ଅଜଣା ଭୟ ଓ ବେଦନାରେ ଶଙ୍କିତ ସିଦ୍ଧାର୍ଥ କମଳା ନିକଟରୁ ବିଦାୟ ନେଲା ।

ଘରକୁ ଫେରି ଆସି ସିଦ୍ଧାର୍ଥ ନର୍ତ୍ତକୀ ଓ ସୁରାରେ ମାତିଲା । ଅଧ ରାତିରେ ସେ ଶ୍ରାନ୍ତ ଦେହକୁ ବିଛଣାରେ ମେଲି ଦେଲା ଏବଂ ନିଃସଙ୍ଗ ଶଯ୍ୟାରେ ବୃଥା ନିଦ୍ରାର ସାଧନା କଲା । ଗଭୀର ବେଦନାର ଭାର ସେ ଆଉ ବହନ କରି ପାରୁ ନ ଥିଲା । କେବଳ ସଂସାର କି ଅନ୍ୟ ଉପରେ ନୁହେଁ, ନିଜ ଉପରେ ଆଜି ତାହାର ବିରକ୍ତି ଆସିଲା । ଭୋର ବେଳେ ସିଦ୍ଧାର୍ଥର ଆଖିରେ ତନ୍ଦ୍ରା ଘାରିଗଲା । ସେହି ଅର୍ଦ୍ଧ ଚେତନ ମୁହୂର୍ତ୍ତରେ ସେ ଏକ ସୁମଧୁର ସ୍ୱପ୍ନ ଦେଖିଲା ।

କମଳା ସୁନା ପଞ୍ଜୁରୀରେ ଗୋଟିଏ ଦୁର୍ଲଭ ଶ୍ରେଷ୍ଠ ଚଢ଼େଇ ରଖିଥିଲା । ସକାଳେ ଚଢ଼େଇଟି ଗୀତ ବୋଲୁଥିଲା । ଦିନେ ହଠାତ୍ ସେ ମୂକ ପାଲଟିବାରୁ ସିଦ୍ଧାର୍ଥ ଅବାକ ହୋଇ ପଞ୍ଜୁରୀ ପାଖକୁ ଯାଇ ଦେଖିଲା, ଚଢ଼େଇଟି ତାହା ଭିତରେ ମରି କାଠ ହୋଇ ପଡ଼ିଛି । ସେ ପଞ୍ଜୁରୀ ଫିଟାଇ ଚଢ଼େଇଟିକୁ କାଢ଼ି ଆଣି ମୁହୂର୍ତ୍ତେ ହାତରେ ଧରି ରାସ୍ତାକୁ ଫିଙ୍ଗି ଦେଲା । ତତ୍‌କ୍ଷଣାତ୍ ତାହାର ହୃଦୟ ଏକ ବ୍ୟଥାରେ ମଥିତ ହେଲା ।

ହଠାତ୍ ସିଦ୍ଧାର୍ଥର ନିଦ ଭାଙ୍ଗିଗଲା । ଏକ ସୁଗଭୀର ବେଦନାର ଅନୁଭୂତି ତାହାର ଦେହ ଓ ମନକୁ ଗ୍ରାସ କଲା । ବିଷଣ୍ଣ ଅନ୍ତରରେ

ସେ ପ୍ରମୋଦ ଉଦ୍ୟାନରେ ପ୍ରବେଶ କଲା ଏବଂ ଧୀରେ ଧୀରେ ଯାଇ ଗୋଟିଏ ଆମ୍ବ ଗଛ ତଳେ ବସିଲା । ସେ ନୀରବରେ ବସି ରହି ଭାବିଲା, ସତେ ଯେମିତି ସ୍ୱପ୍ନ ମରି ଯାଉଛି ! ପ୍ରକୃତରେ କଅଣ ସେ କେବେ ସୁଖୀ ହୋଇଛି ? ଜୀବନରେ ସେ ଅବଶ୍ୟ କେତେ ଥର ଆନନ୍ଦର ଅଭିଜ୍ଞତା ଲାଭ କରିଛି । ଶୈଶବରେ ପଣ୍ଡିତମାନଙ୍କ ସହିତ ତର୍କରେ ପାରଦର୍ଶିତା ଦେଖାଇ ଏବଂ ଯଜ୍ଞାନୁଷ୍ଠାନରେ ସାହାଯ୍ୟ କରି ଯେତେ ବେଳେ ସେ ବ୍ରାହ୍ମଣମାନଙ୍କର ପ୍ରଶଂସା ଲାଭ କରୁଥିଲା, ସେତେବେଳେ ସେ ଅନ୍ତରରେ କାହାର ଆହ୍ୱାନ ଶୁଣି ପାରୁଥିଲା— "ତୁମ ସାମନାରେ ପଡ଼ିଥିବା ପଥରେ ଅଗ୍ରସର ହେବାର ବେଳ ଆସିଛି । ତୁମେ ନିଶ୍ଚୟ ଦେବତାଙ୍କ ଆଶୀର୍ବାଦ ଲଭିବ ।" ଯୌବନରେ ସେ ଜ୍ଞାନ ଆହରଣ ନିମନ୍ତେ କଠୋର ସାଧନା କରୁଥିଲା ବେଳେ ସେହି ପଥରେ ଅଗ୍ରସର ହେବା ପାଇଁ ତାହାର ମନରେ ପ୍ରବଳ ଆଗ୍ରହ ଜାତ ହୋଇଛି । ଗୃହ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ ସମୟରେ, ଶ୍ରମଣମାନଙ୍କୁ ତ୍ୟାଗ କରି ବୁଦ୍ଧଙ୍କ ନିକଟକୁ ଯିବା ସମୟରେ ଏବଂ ଜେତାବନରୁ ଅଜ୍ଞାତ ଜୀବନ ପଥରେ ଯାତ୍ରା ସମୟରେ ସେ ଅନ୍ତରର ଏହି ବାଣୀ ଶୁଣିଛି । ଏବେ ଅବଶ୍ୟ ଏହା ସ୍ତବ୍ଧ ହୋଇ ଯାଇଛି । କେତେ ଦୀର୍ଘ କାଳ ସେ ଅଳୀକ ସୁଖରେ ସଂସାର ସାଗରରେ ବୁଡ଼ି ରହିଛି, ଅଥଚ କଦାପି ପ୍ରକୃତ ତୃପ୍ତି ଲାଭ କରି ନାହିଁ । ଫଳରେ ତାହାର ଜୀବନ ଅଧିକ ଦୁଃଖମୟ ହୋଇଛି । ତାହାର ଜୀବନରେ କେବଳ କମଳାର ମୂଲ୍ୟ ଥିଲା । ଦୁହେଁ ଗୋଟିଏ ଖେଳ ଖେଳୁଥିଲେ । ତାହାର ନାମ ସଂସାର— ସନ୍ତାନ ଲାଭର ଖେଳ । କିନ୍ତୁ ବାରମ୍ବାର ଏହି ଖେଳର ଉପଯୋଗିତା ନାହିଁ । ସେ ଆଉ ଏହା ଖେଳି ପାରିବ ନାହିଁ ।

ସେ ଦିନ ଯାକ ଆମ୍ବ ଗଛ ତଳେ ବସି ଭାବିବାକୁ ଲାଗିଲା ତାହାର ପିତାଙ୍କ କଥା, ଗୋବିନ୍ଦର କଥା ଏବଂ ଗୌତମଙ୍କ କଥା । ସନ୍ଧ୍ୟା ହେଲା । ତଥାପି ସେ ନୀରବରେ ବସି ରହିଲା । ଥରେ ମୁହଁଟେକି ସେ ତାରକା ଖଚିତ ଆକାଶକୁ ଅନାଇଲା । ସାରା ଦିନ ଅନାହାର ହେତୁ ତାହାର ଉଦର ପ୍ରଚଣ୍ଡ କ୍ଷୁଧାରେ ଜଳିଲା । ସେ ଉଠିପଡ଼ିଲା । ଘରେ ସୁସ୍ୱାଦୁ ଖାଦ୍ୟ ଓ ସୁକୋମଳ ଶଯ୍ୟା ଦେଖି ସେ ଟିକିଏ ଶ୍ରାନ୍ତ ହସିଲା । ସେହି ରାତିରେ ସେ ଉଦ୍ୟାନ ଓ ନଗର ତ୍ୟାଗ କରି କେଉଁଆଡ଼େ ଚାଲିଗଲା ।

କାମସ୍ୱାମୀ ବହୁତ ଦିନ ଯାଏ ତାହାକୁ ଖୋଜି ଖୋଜି ପାଇଲା ନାହିଁ । ସିଦ୍ଧାର୍ଥର ନିଖୋଜ ହେବାର ଖବର ପାଇ କମଳା ତିଳେ ମାତ୍ର ବିସ୍ମିତ ହେଲା ନାହିଁ । ସେ ଝରକା ପାଖକୁ ଯାଇ ସୁନା ପଞ୍ଜୁରୀରୁ ଗ୍ଲୋଟେ ଗୀତୁକ ଚଢ଼େଇଟିକୁ ଉଡ଼ାଇ ଦେଲା । ସେହି ଦିନଠୁ କମଳାର ଗୃହ ଅତିଥିମାନଙ୍କ ପାଇଁ ରୁଦ୍ଧ ହେଲା । କିଛି ଦିନ ପରେ ସେ ବୁଝିଲା, ଶେଷ ମିଳନର ଫଳରେ ସିଦ୍ଧାର୍ଥର ସନ୍ତାନ ତାହାର ଗର୍ଭରେ ଆସିଛି ।

## ୮

ସିଦ୍ଧାର୍ଥ ବହୁ ଦୂରକୁ ଚାଲିଗଲା । ପୁଣି ସେ ବଣରେ ପ୍ରବେଶ କଲା, ନଦୀ କୂଳରେ ଯାଇ ଠିଆ ହେଲା । ତାହାର ମନେ ପଡ଼ିଲା, ଗୌତମଙ୍କ ନିକଟରୁ ବିଦାୟ ନେଇ ନିଜର ପଥ ଖୋଜିବାକୁ ବାହାରିଲା ବେଳେ ଜଣେ ନାଉରି ତାହାକୁ ନଦୀ ପାରି କରି ଦେଇ-ଥିଲା । କ୍ଳାନ୍ତ ଓ କ୍ଷୁଧାରେ ସେ ଦୁର୍ବଳ ହୋଇ ଯାଇଥିଲା ।

ନଦୀ କୂଳରେ ନଡ଼ିଆ ଗଛଟିକୁ ଆଉଜି ବସି ସେ ସବୁଜ ଜଳ ପ୍ରବାହ ଆଡ଼କୁ ଚାହିଁ ରହିଲା । ନିଜର ଘୃଣିତ ଦେହକୁ ନଦୀର ବକ୍ଷରେ ଧ୍ୱଂସ କରିଦେବା ପାଇଁ ସିଦ୍ଧାର୍ଥ ବ୍ୟଗ୍ର ହୋଇ ପଡ଼ିଲା । ତାହାର ବିକୃତ ମୁଖ ଭଙ୍ଗୀରେ ପ୍ରକଟିତ ହେଲା ଜୀବନ ଉପରେ ବିରକ୍ତି, ନିଜ ଉପରେ ଘୃଣା । ସେହି ମୁଖର ପ୍ରତିବିମ୍ବ ପଡ଼ିଲା ଜଳରେ । ପ୍ରତିବିମ୍ବଟି ଦେଖି ତାହାର ଅନ୍ତରରେ ଘୃଣା ଜାତ ହେଲା । ସେ ଛୁପ୍ପା ଉପରକୁ ଛେପ ପକାଇଲା । ଦୁଇ ଆଖି ବନ୍ଦ କରି ସେ ପାଣିକୁ ଡେଇଁ ପଡ଼ିବାକୁ ଉଦ୍ୟତ ହେଲା ।

ଠିକ୍ ଏତିକି ବେଳେ ତାହାର ଅନ୍ତରର ନିଭୃତ କୋଣରୁ ଗୋଟିଏ ସ୍ୱର ଧ୍ୱନିତ ହେଲା । ଏକମାତ୍ର ଶବ୍ଦ, ବ୍ରାହ୍ମଣମାନଙ୍କର ପ୍ରାର୍ଥନାର ମନ୍ତ୍ର "ଓଁ" । ଏହି ଶବ୍ଦଟି ତାହାର କାନରେ ବାଜିବାରୁ, ସିଦ୍ଧାର୍ଥର ସୁପ୍ତ ଆତ୍ମା ପୁଣି ଜାଗ୍ରତ ହେଲା । ତତ୍‌କ୍ଷଣାତ ସେ ନିଜର ନିର୍ବୁଦ୍ଧିତା ବୁଝି ପାରିଲା ! ସେ ମନେ ମନେ ଓଁ ଉଚ୍ଚାରଣ କଲା ଏବଂ ବ୍ରହ୍ମର ଅସ୍ତିତ୍ୱ ସମ୍ବନ୍ଧରେ ସଚେତନ ହେଲା । ଅନ୍ଧାରରେ ବିଜୁଳି ପରି ତାହାର ଅନ୍ତର ଆଲୋକିତ ହେଲା । ତା ପରେ ଗଭୀର କ୍ଳାନ୍ତିରେ ଅବସନ୍ନ ହୋଇ ସିଦ୍ଧାର୍ଥ ନଡ଼ିଆ ଗଛର ମୂଳରେ ଶୋଇ ପଡ଼ିଲା ।

ବହୁ କ୍ଷଣ ପରେ ତାହାର ନିଦ ଭାଙ୍ଗିଲା । ତାହାର ମନେ ହେଲା, ଇତି ମଧ୍ୟରେ ବୋଧ ହୁଏ ଦଶ ବର୍ଷ ବିତି ଗଲାଣି । ଗଛର ଫାଙ୍କରେ ଆକାଶ ଦେଖି ପାରି ସେ ପ୍ରଥମେ ବିସ୍ମିତ ହେଲା । ତା ପରେ ତାହାର ମନେ ପଡ଼ିଲା, ସେ କେଉଁଠି ଶୋଇଛି ଏବଂ କିପରି ଏଠାକୁ ଆସିଛି । ଓଁ ଉଚ୍ଚାରଣ କରୁଁ କରୁଁ ସେ ଶୋଇ ପଡ଼ିଥିଲା, ବର୍ତ୍ତମାନ ଏକ ନୂତନ ଜଗତରେ ଆସି ପାଦ ଦେଇଛି । ଏହି

ଅଲୌକିକ ଜାଗରଣ ତାହାର ଅନ୍ତରରେ ଅପୂର୍ବ ଆନନ୍ଦ ଓ ଜିଜ୍ଞାସା ଉପୁଜାଇଲା ।

ସିଦ୍ଧାର୍ଥ ଉଠି ବସି ଦେଖିଲେ, ଜଣେ ମୁଣ୍ଡିତ ମସ୍ତକ ଓ ପୀତ-ବସନ ପରିହିତ ଭିକ୍ଷୁ ତାହା ସାମନାରେ ଧ୍ୟାନ ମଗ୍ନ ହୋଇ ବସି ରହିଛି । ସେ ଅବିଳମ୍ବେ ଗୋବିନ୍ଦଙ୍କୁ ଚିହ୍ନି ପାରିଲେ, ବନ୍ଧୁ ତାହାଙ୍କୁ ଛାଡ଼ି ଦେଇ ବୁଦ୍ଧଙ୍କ ଚରଣ ତଳେ ଆଶ୍ରୟ ଗ୍ରହଣ କରିଛି । କିନ୍ତୁ ଗୋବିନ୍ଦ ତାହାଙ୍କୁ ଚିହ୍ନି ପାରିଲା ନାହିଁ ।

ସିଦ୍ଧାର୍ଥ ପଚାରିଲେ— ତୁମେ ଏଠାକୁ କିପରି ଆସିଲ ?

ଗୋବିନ୍ଦ ଜବାବ ଦେଲା— ବଣରେ ସାପ ଓ ହିଂସ୍ର ଜନ୍ତୁ ସବୁ ବୁଲୁଛନ୍ତି । ଏ ସ୍ଥାନରେ ଶୋଇବା ଆଦୌ ନିରାପଦ ନୁହେଁ । ମୁଁ ଗୌତମଙ୍କର ଜଣେ ଶିଷ୍ୟ, ତୀର୍ଥ ଭ୍ରମଣରେ ବାହାରିଛି, ଆପଣଙ୍କୁ ଏପରି ବିପଦ ସଙ୍କୁଳ ସ୍ଥାନରେ ଶୋଇ ରହିଥିବାର ଦେଖି ନିଜର ଦଳ ତ୍ୟାଗ କରି ମୁଁ ଆପଣଙ୍କୁ ଜଗି ବସିଲି । ବସୁଁ ବସୁଁ ଶୋଇ ପଡ଼ିଲି । ସେଥି ପାଇଁ କର୍ତ୍ତବ୍ୟ ପାଳନରେ ମୋର ତ୍ରୁଟି ହୋଇଛି । ଯାହା ହେଉ ଆପଣ ତ ଉଠିଲେଣି, ଏବେ ମୁଁ ଯାଉଛି, ମୋ ସଙ୍ଗୀମାନେ ଆଗକୁ ଚାଲି ଗଲେଣି ।

ଶୋଇଲା ବେଳେ ମୋତେ ପହରା ଦେଇଥିବା ଯୋଗୁଁ ତୁମକୁ ଅଶେଷ ଧନ୍ୟବାଦ । ସତରେ ଗୌତମଙ୍କ ଶିଷ୍ୟମାନଙ୍କର ହୃଦୟ କରୁଣାରେ ପରିପୂର୍ଣ୍ଣ । ଏକ୍ଷଣି ତୁମେ ଯାଇ ପାର ।

ଗୋବିନ୍ଦ ନମସ୍କାର କରି କହିଲା— ବିଦାୟ !

ବିଦାୟ, ଗୋବିନ୍ଦ— ସିଦ୍ଧାର୍ଥ କହିଲେ ।

ଭିକ୍ଷୁ ଅବାକ ହୋଇ ପଚାରିଲା— ଆପଣ କିପରି ମୋ ନାମ ଜାଣିଲେ ?

ସିଦ୍ଧାର୍ଥ ହସି ହସି ଜବାବ ଦେଲ— ଆଶୈଶବରୁ ସଙ୍ଗୀ ହିସାବରେ ତୁମର ପରିଚୟ ପାଇଛି ।

ସଙ୍ଗେ ସଙ୍ଗେ ଗୋବିନ୍ଦ ଚିତ୍କାର କଲା — ଏଁ, ସିଦ୍ଧାର୍ଥ ! ଏବେ ଚିହ୍ନି ପାରିଲି । ପୁଣି ତୁମ ସହିତ ଦେଖା ହେବାରୁ ଖୁବ୍ ଖୁସି ହେଲି ।

ମୁଁ ମଧ୍ୟ, ଏତେ ଦିନ ପରେ ତୁମକୁ ଦେଖି । କୁଆଡ଼େ ଯାଉଛ ?

କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନାହିଁ । ବର୍ଷା ଋତୁ ଛଡ଼ା ଅନ୍ୟ ଦିନେ ଆମେ ସର୍ବଦା ଗୌତମଙ୍କ ଧର୍ମୋପଦେଶ ପ୍ରଚାର କରି ବୁଲୁଁ । କିନ୍ତୁ ତୁମେ କୁଆଡ଼େ ଚାଲିଛ ?

ମୋ ଅବସ୍ଥା ମଧ୍ୟ ତଦ୍ରୂପ । ଆପାତତଃ ତୀର୍ଥ ଭ୍ରମଣରେ ବାହାରିଛି ।

ତୁମର ବେଶଭୂଷାରୁ ତ ତାହା ମୋଟେ ଜଣା ପଡ଼ୁ ନାହିଁ ।

ସତ କହିଲ, ଗୋବିନ୍ଦ । ତାହାର କାରଣ ହେଉଛି ମୁଁ ଜଣେ ଗୃହୀ ଥିଲି ।

ଏକ୍ଷଣି ତୁମେ କଅଣ ?

ଜାଣେ ନା । ଏତିକି ଜାଣିଛି, ଆଜି ମୁଁ ଜଣେ ପଥିକ । ମୁଁ ଐଶ୍ୱର୍ଯ୍ୟ ହରାଇଛି କି ଐଶ୍ୱର୍ଯ୍ୟ ମୋତେ ହରାଇଛି, ତାହା ମୁଁ ଠିକ୍ ଜାଣେ ନାହିଁ । ବାହ୍ୟ ରୂପର ଚକ୍ର ଦ୍ରୁତ ଘୂରେ । ସେହି ବ୍ରାହ୍ମଣ ସିଦ୍ଧାର୍ଥ, ସନ୍ନ୍ୟାସୀ ସିଦ୍ଧାର୍ଥ, ଆଉ ଧନୀ ସିଦ୍ଧାର୍ଥ ଆଜି କେଉଁଠି ତାହା ତ ତୁମେ ଜାଣ ।

ବନ୍ଧୁ ସିଦ୍ଧାର୍ଥର ମୁହଁକୁ ବହୁ କ୍ଷଣ ସନ୍ଦେହପୂର୍ଣ୍ଣରେ ଚାହିଁ ରହି, ଗୋବିନ୍ଦ ତାହାକୁ ଅଭିବାଦନ ଜଣାଇ ନିଜର ପଥରେ ଆଗୁସାର ହେଲା ।

ସିଦ୍ଧାର୍ଥ ମଧ୍ୟ ସହାସ୍ୟ ବଦନରେ କ୍ରମ ଦୂରଗାମୀ ବନ୍ଧୁର ପଥକୁ ଗୁହିଁ ରହିଲା । ଦୁଇ ଦିନ ଅନାହାରରେ ରହିବା ଫଳରେ ପ୍ରଚଣ୍ଡ କ୍ଷୁଧାରେ ତାହାର ଜଠର ଜଳିଲା । ଏତିକି ବେଳେ ତାହାର ମନେ ପଡ଼ିଲା, କମଳା ନିକଟରେ ସେ ତିନୋଟି ଗୁଣର ଗର୍ବ କରିଥିଲା — ଉପବାସ,ପ୍ରତୀକ୍ଷା ଓ ଧ୍ୟାନ । ବର୍ତ୍ତମାନ ଏଥିରୁ ଗୋଟିଏ ହେଲେ ଗୁଣ ତାହାର ନାହିଁ । ଏସବୁ ସେ ବିକ୍ରିମଯ୍ କରିଛି ତୁଚ୍ଛ ଓ କ୍ଷଣିକ ଇନ୍ଦ୍ରିୟ ସୁଖ ଲାଳସାରେ, ଅର୍ଥ ଓ ଭୋଗ ବିଳାସର ମୋହରେ । ତାହାର ମନେ ହେଲା, ଯାହା ଅନିତ୍ୟ ତାହା ନିଜର ଜୀବନରୁ ଝଡ଼ି ପଡ଼ିଛି ଏବଂ ସେ ପୁଣି ଆସି ମୁକ୍ତ ଆକାଶ ତଳେ ଠିଆ ହୋଇଛି । ତାହାର କିଛି ନାହିଁ, କି ସେ କିଛି ଶିଖି ନାହିଁ । ସେ ଆଜି ପଶ୍ଚାଦ୍‌ଗାମୀ ହୋଇଛି, ପରିଣତ ବାର୍ଦ୍ଧକ୍ୟରୁ ଶୈଶବକୁ ଫେରି ଆସିଛି । ସେ ସହସା ଅନୁଭବ କଲା, ତାହାର ଅନ୍ତରରେ ଉଷ୍ଣର ଆନନ୍ଦର ଜୁଆର ଉଠିଲା । କାରଣ କଅଣ ? ଏତେ ଦିନର ପଙ୍କିଳ ଜୀବନରୁ ମୁକ୍ତ ହୋଇ ଏକ ମହତ୍ତ ଆଦର୍ଶ ଅନୁସରଣ କରି ସେ ଗୋଟାଏ ନୂତନ ଜୀବନର ପଥରେ ଆଗେଇ ଚାଲିଛି ।

ସେ କାନ ପାତି ନିଜ ଅନ୍ତର ବିହଙ୍ଗର ଆନନ୍ଦ ମୁଖର ସଙ୍ଗୀତ ଶୁଣିଲା । ଆଜି ଏହି ବଣରେ ସୁପ୍ରସନ୍ନ ନଦୀ କୂଳରେ ତାହାର ପୂର୍ବ ବ୍ୟକ୍ତି ସତ୍ତାର ମୃତ୍ୟୁ ହୋଇଛି ବୋଲି ସେ ଶିଶୁ ପରି ଏକ ନବ ଜୀବନର ସୁଖରେ ଚଞ୍ଚଳ, ଭୟହୀନ, ଆଶାୟୀ ଓ ଆନନ୍ଦ ମୁଖର । ସେ ଥିଲା ଧାର୍ମିକ, ଚତୁର, ବ୍ୟଗ୍ର, ଦକ୍ଷ ଓ ବୁଦ୍ଧିମାନ । ତାହାର ଅହଂଭାବ ଆଶ୍ରୟ ନେଇଥିଲା ଏହି ଦମ୍ଭ, ପୌରୁଷ ଓ ବୁଦ୍ଧିର ଅହଙ୍କାର ଭିତରେ । ଉପବାସ ଓ ପ୍ରାୟଶ୍ଚିତ ଦ୍ୱାରା ସେ ଅହଂଭାବକୁ ବିନାଶ କରି ପାରିଲା ନାହିଁ । ଏବେ ସେ ନିଜର ଭୁଲ ବୁଝି ପାରିଲା । କୌଣସି ଗୁରୁ ତାହାକୁ ମୁକ୍ତ ଆଣି ଦେଇ ପାରି ନ ଥିଲା । ସେଥି ପାଇଁ ତାହାକୁ

ପଶିବାକୁ ହୋଇଥିଲା ସାଂସାରିକ ଜୀବନର କ୍ଷମତା, ନାରୀ ଓ ଅର୍ଥ ଭିତରେ । ମାତ୍ର ଆଜି ସେହି ବିଳାସୀ ଓ ଧନୀ ସିଦ୍ଧାର୍ଥର ମୃତ୍ୟୁ ହୋଇଛି । ଦୀର୍ଘ ନିଦ୍ରା ପରେ ଏକ ନୂତନ ସୁଖୀ ଶିଶୁ ସିଦ୍ଧାର୍ଥ ଜାତ ହୋଇଛି । ସେ ବି ଦିନେ ବୃଦ୍ଧ ହେବ, ଶେଷରେ ତାହାର ମରଣ ହେବ । କିନ୍ତୁ ସିଦ୍ଧାର୍ଥ ଅନିତ୍ୟ ।

ଉଦରରେ କ୍ଷୁଧାର ଆହ୍ୱାନ ଶୁଣି ସିଦ୍ଧାର୍ଥର ମୁଖରେ ହସ ଫୁଟିଲା । ସେ ଆନନ୍ଦରେ ନଦୀର ପ୍ରବହମାନ ଜଳ ଧାରା ଦେଖିବାକୁ ଲାଗିଲା । ତାହାର ମନେ ହେଲା, ନଦୀର କୁଳୁକୁଳୁ ଧ୍ୱନିରେ ତାହା ପାଇଁ ଏକ ବିଶେଷ ବାଣୀ ଅଛି । ଏହି ଜଳ ପ୍ରବାହ ତାହାକୁ ନିବିଡ଼ ପ୍ରେମରେ ବନ୍ଧନ କଲା । ସେ ସ୍ଥିର କଲା, ଏହି ନଦୀକୁ ତ୍ୟାଗ କରି ସେ ଆଉ କେଉଁଠାକୁ ଯିବ ନାହିଁ ।

## ୯

ସିଦ୍ଧାର୍ଥ ଉଠି ଠିଆ ହେଲା । ନଦୀର କୁଳୁକୁଳୁ ସ୍ୱନ ଓ ଉଦରରେ କ୍ଷୁଧାର ଆର୍ତ୍ତନାଦ ଶୁଣି ଶୁଣି ସେ ଅତି କଷ୍ଟରେ ଯାଇ ଘାଟରେ ପହଞ୍ଚିଲା । ଦେଖିଲା, ଯେଉଁ ନାଉରି ଦିନେ ତାହାକୁ ପାରି କରି ଦେଇଥିଲା ସେ ନୌକାରେ ବସିଛି । ସେ ତାହାକୁ ପଚାରିଲା— ମୋତେ ପାରି କରିଦେବ ?

ଜଣେ ଅଭିଜାତ ପୁରୁଷଙ୍କୁ ଏକାକୀ ଚାଲି ଚାଲି ଆସିବାର ଦେଖି ନାଉରି ଅବାକ ହେଲା । ସେ ଆଗନ୍ତୁକକୁ ଉଠାଇ ନେଇ ନୌକା ଛାଡ଼ି ଦେଲା ।

ସିଦ୍ଧାର୍ଥ କହିଲେ— ତୁମେ ଚମତ୍କାର ଜୀବନଟି ଏ ବାଛି ନେଇଛ ।

ଆହୁଲା ମାରୁ ମାରୁ ନାଉର ହସି ପକାଇଲା— ବାସ୍ତବିକ ମୋ ଜୀବନ ସୁନ୍ଦର । ସବୁରି ଜୀବନ ତ ସୁନ୍ଦର ।

ହୁଏତ ସୁନ୍ଦର । କିନ୍ତୁ ମୁଁ ତୁମ ଜୀବନକୁ ଈର୍ଷା କରେ ।

ମାତ୍ର ଏ ଜୀବନ ସୁବେଶ ଧର୍ମୀ ପାଇଁ ନୁହେଁ ।

ଆଜି ସମସ୍ତେ ମୋତେ ପୋଷାକ ଦ୍ୱାରା ବିଗ୍ଭର କରୁଛନ୍ତି । ନେବ ତୁମେ ଏସବୁ ? ମୋ ପାଖରେ ପାରି କଉଡ଼ି ନାହିଁ । ଆଗରୁ ଆଉ ଥରେ ତୁମେ ମୋତେ ବିନା ପଇସାରେ ପାରି କରି ଦେଇଥିଲ ।

ମୋତେ ସବୁ ଦେଇ ଦେଲେ ଆପଣ କପରି ଚଳିବେ ?

ତୁମର ଖଣ୍ଡେ ପୁରୁଣା ଲୁଗା ଦେଲେ ମୋର ଚଳିଯିବ । ମୁଁ ତୁମର ସହକାରୀ ହୋଇ ନୌକା ଚାଳନା ଶିଖିବି ।

ନାଉରି କିଛି କ୍ଷଣ ତାହାଙ୍କ ଆଡ଼କୁ ଅନାଇ କହିଲା— ଚିହ୍ନିଲି ଆପଣଙ୍କୁ । ପ୍ରାୟ କୋଡ଼ିଏ ବର୍ଷ ତଳେ ଆପଣ ରାତ୍ରିଟିଏ ମୋ କୁଡ଼ିଆରେ ରହିଥିଲେ । ସେତେବେଳେ ଆପଣ ସନ୍ନ୍ୟାସୀ ଥିଲେ । ଆଜି ଆପଣଙ୍କର ନାମ ମୋର ମନେ ପଡ଼ୁ ନାହିଁ ।

ସିଦ୍ଧାର୍ଥ । ହଁ, ତୁମ କଥା ଠିକ୍ ।

ମୋ ନାମ ବାସୁଦେବ । ଆଜି ରାତିରେ ଆପଣ ମୋ କୁଡ଼ିଆରେ ରହିବେ ଏବଂ ଆପଣଙ୍କର କାହାଣୀ ମୋତେ କହିବେ ।

ନଦୀର ତୀବ୍ର ସ୍ରୋତରେ ବାସୁଦେବ ଜୋରରେ ଆହୁଲା ମାରିଲା । ସିଦ୍ଧାର୍ଥ ଚୁପଚାପ ବସି ରହିଲେ । କୂଳରେ ପହଞ୍ଚି ବାସୁଦେବ ସିଦ୍ଧାର୍ଥଙ୍କୁ କୁଡ଼ିଆକୁ ନେଇଗଲା, ତାହାଙ୍କୁ ପାଣି ଓ ରୋଟି ଖାଇବାକୁ

ଦେଲା । ସବୁ ଠାରୁ ଭଲ ଲାଗିଲା ପାଚିଲା ଆମ୍ବ, ଯାହାକୁ ବାସୁଦେବ ବଣରୁ ଗୋଟାଇ ଆଣିଥିଲା ।

ପଶ୍ଚିମ ଦିଗନ୍ତ ଲାଲ୍ ଦିଶିଲା । ସୂର୍ଯ୍ୟାସ୍ତ । ସିଦ୍ଧାର୍ଥ ଓ ବାସୁଦେବ ନଦୀ କୂଳରେ ଗୋଟିଏ ଗଛ ମୂଳରେ ଯାଇ ବସିଲେ ।

ସେହି ଶାନ୍ତ ପରିବେଶରେ ନଦୀକୁ ସାକ୍ଷୀ ରଖି ସିଦ୍ଧାର୍ଥ ଅକପଟରେ ଆତ୍ମ-କାହାଣୀ ଶୁଣାଇବାକୁ ଲାଗିଲା— ଜନ୍ମ, ପରିବାର, ଶୈଶବ, ଅଧ୍ୟୟନ, ସମ୍ଭୋଗ, ଅଭିଜ୍ଞତା, ହତାଶା । ସେ କିଛି ଲୁଚାଇଲା ନାହିଁ । ଗଭୀର ରାତିରେ ତାହାର କାହାଣୀ ସରିଲା ।

ବାସୁଦେବ ମନ ଦେଇ ସିଦ୍ଧାର୍ଥର ସବୁ କଥା ଶୁଣିଲା । ତାହାର ଆତ୍ମ ଚରିତ ଭିତରେ ସେ ସମ୍ପୂର୍ଣ୍ଣ ମଗ୍ନ ହୋଇଗଲା । କିଛି କ୍ଷଣ ଚୁପ୍ ରହି ସେ କହିଲା— ମୋର ଭାବନା ଠିକ୍ । ନଦୀ ଆପଣଙ୍କ ସାଙ୍ଗରେ କଥା କହୁଛି ଏବଂ ବନ୍ଧୁ ବୋଲି ଗ୍ରହଣ କରିଛି । ଆପଣ ବି ତାହାର କଥା ଶୁଣି ପାରିଛନ୍ତି । ବେଶ୍, ଭଲ କଥା । ଆପଣ ମୋର ମଧ୍ୟ ବନ୍ଧୁ ହେଲେ । ମୋ ସାଙ୍ଗରେ ରହନ୍ତୁ । ଦିନେ ମୋର ସ୍ତ୍ରୀ ମୋ ପାଖରେ ରହୁଥିଲା । ସେ ଅନେକ ଦିନରୁ ମରି ଗଲାଣି । ମୁଁ ଏକା ପଡ଼ି ରହିଛି । ଆଜିଠୁଁ ଆମେ ସାଙ୍ଗରେ ରହିବା । ଉଭୟଙ୍କ ପାଇଁ ଏଠାରେ ଖାଦ୍ୟ ଓ ଆଶ୍ରୟର ଅଭାବ ହେବ ନାହିଁ ।

ସିଦ୍ଧାର୍ଥ କହିଲା— ଆନନ୍ଦରେ ତୁମର ଆମନ୍ତ୍ରଣ ଗ୍ରହଣ କଲି । ମନ ଦେଇ ମୋର କାହାଣୀ ଶୁଣିଥିବାରୁ ତୁମକୁ ଧନ୍ୟବାଦ ଦେଉଛି । ତୁମ ଠାରୁ ଏହି ଗୁଣଟି ମୋତେ ଶିଖିବାକୁ ହେବ ।

ମାରବରେ ମନ ଦେଇ ଅନ୍ୟର କଥା ଶୁଣିବାର ବିଦ୍ୟା ମୁଁ ନଦୀ ଠାରୁ ଶିଖିଛି । ଆପଣ ବି ତାହା ଠାରୁ ଶିଖିବେ । ନଦୀ ଆପଣଙ୍କୁ ସବୁ କଥା ଶିଖାଇବ । ଚାଲନ୍ତୁ, ଡେରି ରାତି ହେଲାଣି, ଶୋଇବା ।

ସିଦ୍ଧାର୍ଥ ନାଉର ସାଙ୍ଗରେ ରହିଲା । ଘାଟରେ କିଛି କାମ ନ ଥିଲେ, ସେ ବାସୁଦେବ ସାଙ୍ଗରେ ଧାନ ବିଲକୁ ଯାଏ, ବଣରୁ କାଠ ଗୋଟାଏ, ଗଛରୁ କଦଳୀ କାନ୍ଧି କାଟି ଆଣେ । ଆସ୍ତେ ଆସ୍ତେ ସେ ନୌକାର ଯତ୍ନ ନେବା, କାତ ତିଆରି ଓ ବାଉଁଶ ଚୋଟକେଇ ବୁଣା ଶିଖିଲା । ସବୁ କିଛିହିଁ ତାହାକୁ ଆନନ୍ଦ ଦେଉଥିଲା । ନଦୀ ସବୁ ବେଳେ ତାହାକୁ କିଛି ନା କିଛି ଶିଖିବାର ସୁଯୋଗ ଦେଉଥିଲା । ପ୍ରଶାନ୍ତ ଚିତ୍ତରେ ଧୈର୍ଯ୍ୟ ସହକାରେ ଶୁଣିବାର କୌଶଳ ମଧ୍ୟ ନଦୀ ତାହାକୁ ଶିଖାଇଲା ।

ଦିନେ ସିଦ୍ଧାର୍ଥ ପଚାରିଲା— ସମୟ ବୋଲି ସେ ଗୋଟାଏ ଜିନିଷ ନାହିଁ, ଏହି ଗୁପ୍ତ ତତ୍ତ୍ୱଟି କଅଣ ତୁମେ ନଦୀ ଠାରୁ ଶିଖିଛ ?

ଉଜ୍ଜ୍ୱଳ ହସରେ ବାସୁଦେବର ମୁଖ ପୂରିଗଲା । ସେ କହିଲା — ନଦୀ ନିକଟରେ ଏକମାତ୍ର ବର୍ତ୍ତମାନହିଁ ସତ୍ୟ !

ଏହି ସତ୍ୟଟି ଜାଣିଲା ପରେ ନିଜର ଜୀବନ ପର୍ଯ୍ୟାଲୋଚନା କରି ମୁଁ ବୁଝି ପାରିଛି, ମୋ ଜୀବନ ମଧ୍ୟ ଠିକ୍ ନଦୀ ପରି । ବାଳକ, ବୟସ୍କ ଓ ବୃଦ୍ଧ ସିଦ୍ଧାର୍ଥ ଖାଲି ଛାୟାର ପରଦା ଦ୍ୱାରା ପରସ୍ପର ଠାରୁ ବିଚ୍ଛିନ୍ନ । ପ୍ରକୃତରେ ସେମାନଙ୍କ ଭିତରେ କିଛି ତଫାତ ନାହିଁ । ମୋର ପୂର୍ବ ଜୀବନ ଅତୀତରେ ହଜି ଯାଇ ନାହିଁ, ଭବିଷ୍ୟତ ପାଇଁ ମଧ୍ୟ କିଛି ଅପେକ୍ଷା କରି ନାହିଁ, ସବୁ କିଛିର ଅସ୍ତିତ୍ୱ ବର୍ତ୍ତମାନରେ ନିହିତ ଅଛି ।

ସିଦ୍ଧାର୍ଥ ଉଚ୍ଛ୍ୱସିତ କଣ୍ଠରେ କଥା କହୁଥିଲା । ଏହି ନୂତନ ତତ୍ତ୍ୱ ତାହାକୁ ଅତୀବ ଆନନ୍ଦ ଦେଇଥିଲା— ସମୟକୁ ପରାସ୍ତ କଲେ ସଂସାରର ସବୁ ପାପ ଓ ବେଦନାକୁ ଜୟ କରି ହେବ ।

ବାସୁଦେବ ପଦଟିଏ ସୁଦ୍ଧା କଥା କହିଲା ନାହିଁ । ଥରେ ହସି ଦେଇ ସିଦ୍ଧାର୍ଥର କାନ୍ଧକୁ ହଲାଇ ଦେଇ ସେ ନିଜ କାମରେ ଚାଲିଗଲା ।

ବର୍ଷା ଋତୁରେ ନଦୀ ଫୁଲି ଉଠିଲା । ତାହାର ଗର୍ଜନ ପ୍ରତି ବାସୁଦେବର ଦୃଷ୍ଟି ଆକର୍ଷଣ କରି ସିଦ୍ଧାର୍ଥ ପଚାରିଲା—ନଦୀର ଗର୍ଜନ ମଧ୍ୟରେ ବହୁ କଣ୍ଠର ସ୍ୱର ମିଳିତ ହୋଇଥିବା କଥା ସତ ?

ବାସୁଦେବ ମୁଣ୍ଡ ହଲାଇଲା — ହଁ, ସତ ।

ଏକା ସାଙ୍ଗରେ ନଦୀର ଲକ୍ଷ ଲକ୍ଷ ରକମ ଧ୍ୱନି ଭିତରୁ କେଉଁ ଶବ୍ଦଟି ଉଚ୍ଚାରିତ ହୁଏ ?

ବାସୁଦେବ ଆନନ୍ଦରେ ହସି ସିଦ୍ଧାର୍ଥ ଆଡ଼କୁ ନଇଁ ପଡ଼ି ତାହାର କାନରେ ଚୁପି ଚୁପି ଉଚ୍ଚାରଣ କଲା — ଓଁ ।

ସିଦ୍ଧାର୍ଥର କାନରେ ମଧ୍ୟ ଠିକ୍ ଏହି ଶବ୍ଦଟି ନଦୀର ହଜାରେ ସ୍ୱର ଭେଦି ଆସି ବାଜୁଥିଲା ।

ସମୟ କ୍ରମେ ସିଦ୍ଧାର୍ଥର ଚେହେରା ମଧ୍ୟ ବାସୁଦେବ ପରି ହୋଇଗଲା । ଦୁହିଁଙ୍କୁ ଏକାଠି ଦେଖିଲେ ଅନେକେ ସେମାନଙ୍କୁ ଦୁଇ ଭାଇ ବୋଲି ଭାବନ୍ତି ।

ଦୁଇ ବନ୍ଧୁ ପ୍ରାୟ ନଦୀ କୂଳରେ ଗଛ ମୂଳରେ ଆସି ବସନ୍ତି ଏବଂ ନୀରବରେ କୁଳୁକୁଳୁ ସଙ୍ଗୀତ ଶୁଣନ୍ତି । ସେଥିରୁ ଜୀବନର ସ୍ୱର ଓ ରୂପ ପରିବର୍ତ୍ତନର ଇଙ୍ଗିତ ମିଳେ । ଦୁହିଁଙ୍କ ମନରେ ଏକା ଭାବନା ଜାତ ହୁଏ । ବେଳେ ବେଳେ କେହି କେହି ପଥିକ ନାଉରିଙ୍କ ପାଖରେ ନିଜର ଜୀବନ କାହାଣୀ କହି ବସେ । ହୁଏତ କେହି ନଦୀର ବାଣୀ ଶୁଣିବା ଲାଗି ସେମାନଙ୍କ କୁଡ଼ିଆରେ ରାତି କଟାଏ । ସେମାନଙ୍କ ସମ୍ବନ୍ଧରେ ଜନରବ ଶୁଣି କେତେ ଅଜବ

ଲୋକ ଆସି ସେଠାରେ ହାଜର ହୁଅନ୍ତି, ମାତ୍ର ସେମାନଙ୍କୁ ନାନା କଥା ପଚାରି କରୁଛ ଜବାବ ପାଆନ୍ତି ନାହିଁ। ସେମାନେ ଦୁଇ ଜଣ ସନ୍ଦେହପ୍ରଦ୍ଧ ବୁଦ୍ଧ ପରି ଦିଶନ୍ତି। ସେମାନଙ୍କୁ ନବାବ ବୋଲି ଲୋକେ ସନ୍ଦେହ କରନ୍ତି।

ବର୍ଷ ପରେ ବର୍ଷ ବିତିଗଲା। ଦିନେ କେତେ ଜଣ ବୌଦ୍ଧ ଭିକ୍ଷୁ ଘାଟରେ ପହଞ୍ଚି ସେମାନଙ୍କୁ ନଦୀ ପାରି କରିଦେବା ପାଇଁ ନାଉରିଙ୍କୁ ଅନୁରୋଧ କଲେ। ନାଉରି ସେମାନଙ୍କ ଠାରୁ ଶୁଣିଲା ଯେ ଭଗବାନ ତଥାଗତ ଅତ୍ୟନ୍ତ ପୀଡ଼ିତ, ତାଙ୍କର ଦେହ ତ୍ୟାଗ ଓ ନିର୍ବାଣର ମୁହୂର୍ତ୍ତ ଆସନ୍ନ। ସେଥି ପାଇଁ ଭିକ୍ଷୁମାନେ ଦଳ ଦଳ ହୋଇ ତାଙ୍କର ଶେଷ ଦର୍ଶନ ପାଇଁ ତପୋବନ ଆଡ଼କୁ ଧାଇଁଥିଲେ।

ଯାତ୍ରୀମାନଙ୍କର ବ୍ୟଗ୍ରତା ଦେଖି ସିଦ୍ଧାର୍ଥର କେବଳ ମନେ ପଡ଼ିଲା ସେହି ମୃତ୍ୟୁ ପଥ ଯାତ୍ରୀ ମହର୍ଷିଙ୍କ କଥା, ଯାହାଙ୍କର ବାଣୀ ଦିନେ ସେ ନିଜେ ଶୁଣିଥିଲା। ତାରୁଣ୍ୟର ଚପଳତାରେ ସେ ତାହାଙ୍କୁ ଯେଉଁସବୁ କଥା କହିଥିଲା, ତାହା ମନେ ପଡ଼ିଲାରୁ ତାହାକୁ ହସ ମାଡ଼ିଲା। ସେ ତାଙ୍କର ଉପଦେଶ ଗ୍ରହଣ କରି ପାରି ନାହିଁ। ଯେ ପ୍ରକୃତ ଜିଜ୍ଞାସୁ, ସେ କଦାପି ଅନ୍ୟର ଉପଦେଶ ଗ୍ରହଣ କରି ନ ପାରେ।

ବୁଦ୍ଧଙ୍କର ଦର୍ଶନ ଲାଭ ଆଶାରେ ହଜାର ହଜାର ଲୋକ ତୀର୍ଥ ଯାତ୍ରୀ ପରି ଚାଲିଥିଲେ। ଦିନେ କମଳା ମଧ୍ୟ ସେମାନଙ୍କ ସହିତ ଯୋଗ ଦେଲା। ସେ ବାରାଙ୍ଗନାର ଜୀବନ ତ୍ୟାଗ କରି ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲା। ଖଣ୍ଡିଏ ସାମାନ୍ୟ ଶାଢ଼ି ପିନ୍ଧି ପୁଅର ହାତ ଧରି ସେ ରାସ୍ତାକୁ ବାହାରି ଆସିଥିଲା। ଦୀର୍ଘ ପଥ ଅତିକ୍ରମ କରି କମଳା ନଦୀ କୂଳରେ ଆସି ପହଞ୍ଚିଲା। ପୁଅଟି ଖୁବ୍ କ୍ଳାନ୍ତ ହୋଇ ପଡ଼ିଥିଲା। ସେ ଆଉ ଚାଲି ପାରିଲା ନାହିଁ। ତାହାକୁ ଭୋକ

ଲାଗିଲାରୁ ସେ କଦଳୀଟିଏ ଖାଇବାକୁ ଲାଗିଲା । କମଳା ମଧ୍ୟ କ୍ଳାନ୍ତରେ ପୁଅ ପାଖରେ ଭୂଇଁରେ ଶୋଇ ପଡ଼ିଲା । ସେ ଅଗ୍ନିକ ଯନ୍ତ୍ରଣାରେ ଆର୍ତ୍ତନାଦ କଲା । ବାଳକ ଚମକି ପଡ଼ି ଦେଖିଲା, ଗୋଟି କଳା ସାପଟିଏ କମଳାର ଶାଢ଼ି ଭିତରୁ ବାହାରି ଚାଲିଗଲା । ସାହାଯ୍ୟର ଆଶାରେ ଦୁହେଁ ଘାଟ ପାଖକୁ ଧାଇଁଲେ । କମଳାର ଶକ୍ତି ନ ଥିବାରୁ ସେ ତଳେ ମୁହଁ ମାଡ଼ି ପଡ଼ିଗଲା । ବାଳକ ମାଆକୁ ଦୁଇ ହାତରେ କୁଣ୍ଢାଇ ଧରି ସାହାଯ୍ୟ ପାଇଁ ଚିତ୍କାର କଲା । ତାହା ଶୁଣି ବାସୁଦେବ ଦୌଡ଼ି ଆସିଲା ଏବଂ କମଳାକୁ ଟେକି ନେଇ କୁଡ଼ିଆକୁ ଧାଇଁଗଲା । ସେତିକି ବେଳେ ସିଦ୍ଧାର୍ଥ ଚୁଲି ଲଗାଉଥିଲା । ପ୍ରଥମେ ବାଳକ ଉପରେ ତାହାର ଦୃଷ୍ଟି ପଡ଼ିଲା । ତା ପରେ ସେ କମଳାର ଅଚେତ ଦେହ ଦେଖି ପାରିଲା । ତତ୍‌କ୍ଷଣାତ ସେ ବୁଝି ପାରିଲା, ବାଳକଟି ହେଉଛି କମଳାର ପୁଅ ।

ଇତି ମଧ୍ୟରେ କମଳାର ଦେହରେ ବିଷ ଚରି ଯାଇଥିଲା । ବିଷନାଶକ ଔଷଧ ଦେବାରୁ କମଳାର ଟିକିଏ ଚେତା ପଶିଲା । ସେ ସିଦ୍ଧାର୍ଥର ଶେଯରେ ଶୋଇଥିଲା । ସିଦ୍ଧାର୍ଥ ବ୍ୟଗ୍ର ହୋଇ ତାହାର ମୁହଁ ଉପରେ ନଇଁ ପଡ଼ିଲା । ହଠାତ୍ କମଳାର ମଳିନ ମୁଖରେ ଟିକିଏ ହସ ଫୁଟିଲା । ସେ ସ୍ଥିର ଦୃଷ୍ଟିରେ ସିଦ୍ଧାର୍ଥର ମୁହଁକୁ ଚାହିଁ ରହିଲା । ତାହାର ସର୍ବାଙ୍ଗରେ ବିଷର ପ୍ରକ୍ରିୟା ଆରମ୍ଭ ହୋଇଥିଲା । ସେ ଅତି କଷ୍ଟରେ ଧୀରେ ଧୀରେ କହିଲା — ତୁମେ ବୁଢ଼ା ହେଲଣି, ପ୍ରିୟତମ । ଯେଉଁ ଦିନେ ମୋ ପାଖକୁ ପ୍ରେମର ପାଠ ଶିଖିବାକୁ ଯାଇଥିଲ, ତୁମର ଚକ୍ଷୁ ଏବେ ବି ଅବିକଳ ତାହାରି ପରି ଅଛି । ହାୟ, ମୁଁ ବି ବୁଢ଼ୀ ହେଲିଣି । ମୋତେ ଚିହ୍ନି ପାରିଲ ?

ସିଦ୍ଧାର୍ଥ ହସି ହସି ଜବାବ ଦେଲ— ଦେଖିଲ ମାତ୍ରେ ମୁଁ ତୁମକୁ ଚିହ୍ନି ପାରିଛି ।

କମଳା ପୁଅକୁ ଦେଖାଇ ପଚାରିଥିଲା— ଏହାଙ୍କୁ ଚିହ୍ନିଛ ? ତୁମର ପୁଅ ।

ବାଳକ କାନ୍ଦିବାକୁ ଲାଗିଲା । ସିଦ୍ଧାର୍ଥ ତାହାକୁ କାଖେଇ ତାହାର ମୁଣ୍ଡ ଧୀରେ ଧୀରେ ଆଉଁସିଲା । କାନ୍ଦୁ କାନ୍ଦୁ ପୁଅକୁ ନିଦ ଆସିଲା । ସିଦ୍ଧାର୍ଥ ତାହାକୁ ନେଇ ବାସୁଦେବର ବିଛଣାରେ ଶୁଆଇ ଦେଲା ।

ଆଉ ଥରେ କମଳାର ଚେତା ଫେରିଲା । ସିଦ୍ଧାର୍ଥ ଶାନ୍ତ ଚିତ୍ତରେ ତାହାର ବିବର୍ଣ୍ଣ ମୁଖର ବେଦନାର ଚିହ୍ନ ପାଠ କଲା । କମଳା ତାହାକୁ ଅନାଇ କହିଲା— ଦେଖୁଛି, ଏବେଣି ତୁମେ ନୂତନ ଦୃଷ୍ଟି ପାଇଛ । ତୁମେ ସିଦ୍ଧାର୍ଥ ସତ, ମାତ୍ର ଯେ ଦିନେ ମୋ ଜୀବନରେ ଆସିଥିଲା ତୁମେ ଠିକ୍ ତାହା ପରି ନୁହଁ । ତୁମେ ଶାନ୍ତି ଲାଭ କରିଛ ?

ସିଦ୍ଧାର୍ଥ କିଛି ଜବାବ ଦେଲା ନାହିଁ, ଖାଲି ଆସ୍ତେ କମଳାର ହାତକୁ ଚିପି ଦେଲା ।

କମଳା କହିଲା— ବୁଝିଲି । ମୁଁ ଶୀଘ୍ର ଶାନ୍ତି ଲାଭ କରିବି ।

ତୁମେ ତ ତାହା ପାଇଲ— ସିଦ୍ଧାର୍ଥ ଚୁପିଚୁପି କହିଲା ।

କମଳାର ଜିଭ ଅଚଳ ହୋଇଗଲା । ସେ ଖାଲି ସିଦ୍ଧାର୍ଥର ମୁହଁକୁ ଚାହିଁ ରହିଲା । ଚରମ ଯନ୍ତ୍ରଣାରେ ତାହାର ଦେହ ଶେଷ ଥର ପାଇଁ ଥରି ଥରି ସ୍ତବ୍ଧ ହୋଇଗଲା ।

ସେହି ଶୀର୍ଣ୍ଣ ମୁଖ ଓ କୁଞ୍ଚିତ ଅଧରକୁ ଚାହିଁ ସିଦ୍ଧାର୍ଥର ମନେ ପଡ଼ିଲା, ତାହାର ଜୀବନର ବସନ୍ତ ଋତୁରେ ସେ ଏହି ଅଧର ଦୁଇଟିକୁ ସଦ୍ୟ କଟା ଡିମିରି ଫଳ ସହିତ ତୁଳନା କରିଥିଲା ।

ତାହାର ଅସ୍ତିତ୍ୱ ସେ ଏକ୍ଷଣି ବି ଅନୁଭବ କଲା । ମରଣ ସାମନାରେ ବସି ସେ ଉପଲବ୍ଧି କଲା— କୌଣସି ଜୀବନର ଧ୍ୱଂସ ନାହିଁ, କିଛି ହଜି ଯାଏ ନାହିଁ ।

କେହି ଘର ଛୁଇଁଲେ ନାହିଁ । ବାସୁଦେବ ଗୋଟାଏ କୋଣରେ ନଡ଼ା ବିଛାଇ ଶୋଇଲା । ସିଦ୍ଧାର୍ଥ ବାହାରେ ବସି ରାତିଟା ବିତାଇ ଦେଲା ।

ସକାଳେ ସୂର୍ଯ୍ୟୋଦୟରୁ ଆଗରୁ ବାସୁଦେବ ଉଠି ଆସି ପଚାରିଲା— ଟିକିଏ ଶୋଇଲ ନାହିଁ ?

ସିଦ୍ଧାର୍ଥ ଜବାବ ଦେଲା— ନା, ବାସୁଦେବ । ମୁଁ ଏଠାରେ ବସି ନଦୀ ଠାରୁ ଅନେକ କଥା ଶୁଣିଲି ।

ତୁମେ ଦୁଃଖ କରୁଛ ।

ନା, କାହିଁକି ଦୁଃଖ କରିବି ? ଧନେ ଅର୍ଥ ଯୋଗୁଁ ମୁଁ ସୁଖୀ ଥିଲି । ଆଜି ମୁଁ ଅଧିକ ସୁଖୀ, ମୋ ପୁଅକୁ ପାଇଛି ।

ତୁମ ପୁଅକୁ ମୁଁ ବି ସାଦରରେ ଗ୍ରହଣ କରୁଛି । ଚାଲ, ଯେଉଁଠି ମୋ ସ୍ତ୍ରୀର ଚିତା ରଚନା କରିଥିଲି, ସେଠାରେ କମଳାର ଚିତା ସଜାଡ଼ିବା ।

## ୧୦

ଖୁଡ଼ ବାଳକ କାନ୍ଦି କାନ୍ଦି ମାଆର ଶେଷ କୃତ୍ୟ ସମ୍ପନ୍ନ କଲା । ସିଦ୍ଧାର୍ଥ ପୁତ୍ର ସହିତ ଗଭୀର ସହାନୁଭୂତିର ବ୍ୟବହାର କଲା ଏବଂ ତାହାକୁ ପ୍ରାପ୍ତ ଏକା ରହିବାକୁ ଦେଲା । କ୍ରମେ କ୍ରମେ ସେ ବୁଝିଲା,

ଏଗାର ବର୍ଷର ବାଳକ ମାଆର ଆଦର ପାଇ ବିଗିଡ଼ି ଯାଇଛି ଏବଂ ଧନୀର ଜୀବନ ଯାତ୍ରାରେ ଅଭ୍ୟସ୍ତ ହୋଇଛି । ସୁତରାଂ ଏହି କୁଡ଼ିଆରେ ପଡ଼ି ରହି କଠୋର ଜୀବନ ସାଙ୍ଗରେ ନିଜକୁ ଖାପ ଖୁଆଇବା ତାହା ପକ୍ଷରେ ମୋଟେ ସହଜ ନୁହେଁ । ସେହି ଅବସ୍ଥାରେ ତାହାର ସ୍ୱାଚ୍ଛନ୍ଦ୍ୟରେ ସିଦ୍ଧାର୍ଥ ତ୍ରୁଟି କଲା ନାହିଁ । କିନ୍ତୁ ପୁଅର ଏକଜିଦିଆ ଭାବ ଓ ପ୍ରତିକୂଳତା ଦୂର ହେବାର ଲକ୍ଷଣ ଦିଶିଲା ନାହିଁ । ତେଣୁ ସିଦ୍ଧାର୍ଥ ଉପଲବ୍ଧି କଲା, ପୁଅ ତାହା ପାଇଁ ସୁଖ ଓ ଶାନ୍ତି ବଦଳରେ ଦୁଃଖ ଓ ଜଞ୍ଜାଳ ଆଣିଛି ।

ବାଳକ କୁଡ଼ିଆରେ ରହୁଥିଲା, ବାସୁଦେବ ଘାଟରେ ନୌକା ପାରି କରୁଥିଲା, ଆଉ ସିଦ୍ଧାର୍ଥ ଘର କାମ କରୁଥିଲା । ମାସ ପରେ ମାସ ସିଦ୍ଧାର୍ଥ ଧୈର୍ଯ୍ୟ ଧରି ଅପେକ୍ଷା କରିଥିଲା, କେବେ ପୁଅ ତାହାର ସ୍ନେହର ପ୍ରତିଦାନ ଦେବ । ଦିନେ ବାଳକ ରାଗି ଯାଇ ଲଗେ ଲଗେ ଦୁଇଟା ଭାତ ହାଣ୍ଡି ଭାଙ୍ଗି ଦେଲା । ସିଦ୍ଧାର୍ଥ ପୁଅର ଔଦ୍ଧତ୍ୟ ମର୍ମନ୍ତୁଦ ବେଦନାରେ ଦେଖିଲା ।

ବାସୁଦେବ ବାପପୁଅର ଦ୍ୱନ୍ଦ୍ୱ ମୀରବରେ ଲକ୍ଷ୍ୟ କରୁଥିଲା । ସେ ସିଦ୍ଧାର୍ଥକୁ ଡାକି ନେଇ କହିଲା— ଦେଖୁଛି, ଆଜିକାଲି ତୁମ ମନରେ ସୁଖ ନାହିଁ । ପୁଅ ତୁମକୁ ଦୁଃଖ ଦେଉଛି । ସେଥିରେ ମୁଁ ମଧ୍ୟ ଭାଗୀଦାର । ସେ ଅନ୍ୟ ଏକ ଧରଣର ଜୀବନରେ ଅଭ୍ୟସ୍ତ । ଏଠାରେ ରହି ସେ ସୁଖୀ ହୋଇ ପାରିବ ନାହିଁ ।

ସିଦ୍ଧାର୍ଥ ବ୍ୟଥିତ ଚିତ୍ତରେ ମୃଦୁ କଣ୍ଠରେ କହିଲା— ତାହାକୁ ଛାଡ଼ି ମୁଁ କିପରି ରହିବି ? ମୋତେ ଆଉ କିଛି ଦିନ ସମୟ ଦିଅ । ତାହାକୁ ମନାଇବା ପାଇଁ ମୁଁ ଅହରହ ଚେଷ୍ଟା କରୁଛି ।

ତୁମ ପୁଅର ହୃଦୟ କଠିନ । ସେ ବହୁତ ଭୁଲ, ପାପ ଓ ଅନ୍ୟାୟ କରିବ । ତୁମେ ତାହାକୁ କଅଣ ଶିକ୍ଷା ଦେଉଛ ? ତୁମେ ତାହାକୁ ଦଣ୍ଡ ଦିଅ କି ?

ନା, ମୁଁ ଏସବୁ କିଛି କରେ ନାହିଁ ।

ତୁମେ କଦାପି ତାହା ପ୍ରତି କଠୋର ହୋଇ ପାରିବ ନାହିଁ । ଭଲ କଥା । ମୁଁ ତୁମର ଧୈର୍ଯ୍ୟକୁ ପ୍ରଶଂସା କରେ । ତୁମେ ଏହି ଗର୍ବୀ ଓ ଏକଜିଦିଆ ବାଳକକୁ ଦୁଇ ବୁଢ଼ାଙ୍କ ସାଙ୍ଗରେ ଜବରଦସ୍ତି ଧରି ରଖିଛ । କିନ୍ତୁ ତାହାକୁ ଦଣ୍ଡ ଦେଉ ନାହିଁ କାହିଁକି ?

ତାହା ହେଲେ ମୁଁ କଅଣ କରିବି ?

ତାହାକୁ ନଗରକୁ ନିଜ ମାଆର ଘରକୁ ନେଇ ଯାଅ । ସେଠାରେ ସେ ନିଜର ଦୁନିଆରେ ଚଳି ବଡ଼ ହେବ । ଆମ ଦୁନିଆକୁ ସେ କଦାପି ନିଜର ବୋଲି ଗ୍ରହଣ କରି ପାରିବ ନାହିଁ ।

ତୁମେ ମୋ ମନ କଥା ବୁଝି ପାରିଛ ସତ । କିନ୍ତୁ ଏତେ କଠିନ ହୃଦୟ ହୋଇ ସେ କିପରି ସଂସାରରେ ବାସ କରିବ ?

ବାସୁଦେବ ହସି ହସି କହିଲେ— ବନ୍ଧୁ, ନଦୀ ତୁମ ପ୍ରଶ୍ନର ଉତ୍ତର ଦେବ । ତୁମେ କଅଣ ସତେ ବିଶ୍ୱାସ କର ଯେ ସଂସାରର ଦୁଃଖ ଭିତରୁ ତୁମ ପୁଅକୁ ରକ୍ଷା କରି ପାରିବ ? କିପରି ? ଉପଦେଶ, ଭଗବତ୍ ପ୍ରାର୍ଥନା, ସତ୍ ପଥର ଇଙ୍ଗିତ ଦ୍ୱାରା ? ସନ୍ନ୍ୟାସୀ ସିଦ୍ଧାର୍ଥଙ୍କୁ କିଏ ରକ୍ଷା କଲା ପାପ, ଲୋଭ ଓ ନିର୍ବୁଦ୍ଧିତାରୁ ? ସବୁ ଉପଦେଶ ଧୂଳିରେ ଉଡ଼ିଯାଏ । ଜୀବନର ବିଚିତ୍ର ଅଭିଜ୍ଞତା ଭିତରେ ନିଜର ପଥ ଖୋଜି ନେବାକୁ ହୁଏ । ତୁମେ ଦିନେ ଯେଉଁ ପଥ ଅତିକ୍ରମ କରିଛ, ସେହି ପଥରୁ ତାହାକୁ ନିବୃତ୍ତ କରିବାକୁ ଚାହଁ । କିନ୍ତୁ ତୁମେ ତାହାର ମଙ୍ଗଳ କାମନାରେ ଦଶ ଥର ପ୍ରାଣ ହାରିଲେ

ସୁଦ୍ଧା ତାହାର ଭାଗ୍ୟ ଭଲେ ହେଲେ ପରିବର୍ତ୍ତନ କରି ପାରିବ ନାହିଁ ।

ସିଦ୍ଧାର୍ଥ ରାତି ସାରା ଶୋଇ ପାରିଲା ନାହିଁ । ବାସୁଦେବ ତାହାକୁ କିଛି ନୂଆ କଥା କହି ନ ଥିଲା । ହେଲେ ପୁତ୍ର ସ୍ନେହ ତାହାକୁ ଅନ୍ଧ କରିଥିଲା । ତେଣୁ ସେ ବନ୍ଧୁର ଉପଦେଶ ଅନୁସାରେ ପୁଅକୁ ତ୍ୟାଗ କରି ପାରିଲା ନାହିଁ । ସିଦ୍ଧାର୍ଥର ଦୁର୍ବଳତାର ସୁଯୋଗ ନେଇ ପୁଅ ତାହା ପ୍ରତି ବାରମ୍ବାର ଅସମ୍ମାନଜନକ ବ୍ୟବହାର କଲା । ସିଦ୍ଧାର୍ଥ ନିଜ ଧୈର୍ଯ୍ୟ ଓ ସ୍ନେହର ଅସ୍ତ୍ର ଦ୍ୱାରା ନୀରବରେ ଯୁଝିବାକୁ ଲାଗିଲା । ସେ ଆଶା କଲା, ଦିନେ ନା ଦିନେ ପୁଅର ମନ ଜୟ କରିବ । ସୁତରାଂ ଦୁଇ ବନ୍ଧୁ ନୀରବରେ ଅପେକ୍ଷା କଲେ ।

ଦିନେ ପୁଅର ମୁହଁକୁ ଚାହିଁ ରହିଥିଲା ବେଳେ ହଠାତ୍ କମଳାର ମୁଖ ସିଦ୍ଧାର୍ଥର ମାନସ ପଟରେ ଭାସିଗଲା । ତାହାର ମନେ ପଡ଼ିଲା, ବହୁ ଦିନ ତଳେ ଥରେ କମଳା ତାହା ନିକଟରେ ଅଭିଯୋଗ କରିଥିଲା—ତୁମେ ଭଲ ପାଇ ପାର ନାହିଁ । ସିଦ୍ଧାର୍ଥ ଏହି ଅଭି-ଯୋଗ ସ୍ୱୀକାର କରିଥିଲା । ଏହା ବାସ୍ତବିକ ସତ ଯେ ସିଦ୍ଧାର୍ଥ ଭଲ ପାଇ ଅନ୍ୟ ଭିତରେ ନିଜକୁ ହଜାଇ ଦେଇ ପାରି ନ ଥିଲା । ସାଧାରଣ ଲୋକ ଓ ତାହା ଭିତରେ ତଫାତ ଏତିକି ମାତ୍ର । କିନ୍ତୁ ବର୍ତ୍ତମାନ ପୁଅକୁ ପାଇ ସେ ଜଣେ ସାଧାରଣ ମଣିଷ ହେଲା । ଏହି ଅପତ୍ୟ ସ୍ନେହ ତାହାକୁ ଗଭୀର ଦୁଃଖ ଦେଲା । ତଥାପି ତାହା ସିଦ୍ଧାର୍ଥକୁ ଜୀବନର ଅନୁପମ ଅବସ୍ଥାରେ ନବୀନ କଲା ଏବଂ ଉପରକୁ ଉଠାଇଲା ।

ସିଦ୍ଧାର୍ଥ ଆଜି ଅନୁଭବ କଲା, ଏହି ଅନ୍ଧ ପୁତ୍ର ସ୍ନେହ ହେଉଛି ସାଧାରଣ ମଣିଷର ଏକ ସ୍ୱାଭାବିକ ଅନୁଭୂତି । ଏହାହିଁ

ସଂସାର । ଏହା ବୃଥା ନୁହେଁ, ଜୀବନରେ ଏହାର ପ୍ରୟୋଜନ ଅଛି । କାରଣ ପ୍ରେମର ବୀଜ ମଣିଷର ସ୍ୱଭାବ ଭିତରେ ଲୁଚି ରହିଛି ।

ବାଳକକୁ ଜୀର୍ଣ୍ଣ କୁଟୀରରେ ବନ୍ଦୀ କରି ରଖିଥିବାରୁ, ସେ ଧର୍ମ ଧ୍ୱଜୀ ପିତାକୁ ଦେଖିଲା କ୍ଷଣି ତାହାର ଅନ୍ତର ବିରକ୍ତିରେ ପୂରି ଯାଉଥିଲା । ତାହାର ରୁକ୍ଷ ବ୍ୟବହାରରେ ସିଦ୍ଧାର୍ଥ ଖାଲି ହସୁଥିଲା । ପୁଅର ସବୁ ଦୁରନ୍ତ ପଣିଆ ସେ ହାସ୍ୟ ମୁଖରେ ସହୁଥିଲା ।

ଦିନେ ସିଦ୍ଧାର୍ଥ ବାଳକକୁ ଶୁଖିଲା ଡାଳ ପତ୍ର ଗୋଟାଇ ଆଣିବାକୁ କହିଲା । କ୍ରୁଦ୍ଧ ଉଦ୍ଧତ ବାଳକ ସେହି କଥାକୁ କାନ ଦେଲା ନାହିଁ । ନିଜର ପିତା ପ୍ରତି ଘୃଣା ଓ ଅବଜ୍ଞା ପ୍ରକାଶ କରି ସେ ଚିତ୍କାର କଲା— ତୁମେ ନିଜେ ଯାଇ ନେଇ ଆସୁ ନାହଁ ? ମୁଁ ତୁମର ଚାକର ନୁହେଁ । ତୁମର ସେତେ ସାହସ ନାହିଁ ବୋଲି ମୋତେ ପ୍ରହାର କର ନାହିଁ । ତୁମର ଇଚ୍ଛା, ମୁଁ ତୁମ ପରି ଧାର୍ମିକ ବିନୟୀ ବିଜ୍ଞ ହେବି । କିନ୍ତୁ ତୁମ ଉପରେ ଆକ୍ରୋଶ ହେତୁ ମୁଁ କଦାପି ସେହି ପଥରେ ଯିବି ନାହିଁ । ବରଂ ଚୋରି କରିବି, ଖୁନ୍ କରିବି । ତଥାପି ତୁମ ପରି ହେବି ନାହିଁ । ତୁମେ ମୋ ମାଆର ପ୍ରେମିକ, କିନ୍ତୁ ମୁଁ ତୁମକୁ ପିତା ବୋଲି ସ୍ୱୀକାର କରେ ନାହିଁ । ମୁଁ ତୁମକୁ ଘୃଣା କରେ ।

ଏତେ ଦିନର ସଞ୍ଚିତ କ୍ରୋଧ ଓ ପୁଞ୍ଜିଭୂତ ଅସନ୍ତୋଷ ଆଜି ବାଳକର କଣ୍ଠସ୍ୱରରେ ପ୍ରକାଶ ପାଇଲା । ମନର ରାଗ ମେଣ୍ଟାଇ ସେ କୁଡ଼ିଆରୁ ଚାଲିଗଲା, ଆଉ ରାତିର ଗଭୀର ଫେରିଲା । ପର ଦିନ ସକାଳେ ତାହାର ଦେଖା ମିଳିଲା ନାହିଁ । ବାସୁଦେବ ଓ ସିଦ୍ଧାର୍ଥ ଯେଉଁ ପେଡ଼ିରେ ପାରି କଉଡ଼ି ସାଇତି ରଖୁଥିଲେ, ସେଠା ନ ଥିଲା । ନଦୀର ଆର ପାରିରେ ନୌକାଟି ବନ୍ଧା ହୋଇଥିଲା । ପୁଅ କୁଆଡ଼େ ପଳାଇଲା ।

ମର୍ମାନ୍ତକ ବେଦନାରେ ମୁହ୍ୟମାନ ସିଦ୍ଧାର୍ଥ କହିଲା— ପିଲଟା ବଣରେ କପରି ଏକା ଯିବ ? ବିପଦ ଆପଦ ଘଟି ପାରେ ତାହାକୁ ଖୋଜି ଆଣିବାକୁ ହେବ । ଆସ ବାସୁଦେବ, ଗୋଟିଏ ଭେଲା ତିଆରି କରି ଆର ପାରିକୁ ଯିବା ।

ବାସୁଦେବ କହିଲା— ହଁ, ନୌକା ଆଣିବା ପାଇଁ ଭେଲା ତ ନିଶ୍ଚୟ ତିଆରି କରିବାକୁ ହେବ । ବନ୍ଧୁ, ପୁଅକୁ ଯିବାକୁ ଦିଅ । ସେ ତ ଆଉ ପିଲା ନୁହେଁ, ନିଜର ଦାୟିତ୍ୱ ନେବାର ବୟସ ତାହାର ହେଲାଣି । ସେ ନିଜ ପଥରେ ଚାଲିବ ।

ସିଦ୍ଧାର୍ଥ କିଛି ଜବାବ ଦେଲା ନାହିଁ । ସେ କଟୁରିରେ ବାଉଁଶ କାଟି ଭେଲା ତିଆରି କରିବାକୁ ଲାଗିଲା । ବାସୁଦେବ ବେତ ଓ ଘାସର ଦଉଡ଼ିରେ ଭେଲାଟି ବାନ୍ଧିଲା । ଦୁହେଁ ନଦୀର ଆର କୂଳରେ ଯାଇ ପହଞ୍ଚିଲେ ।

ସିଦ୍ଧାର୍ଥ ପଚାରିଲା— କଟୁରିଟା କାହିଁକି ଆଣିଲ ?

କାତଟା ଯେ ନାହିଁ— ବାସୁଦେବ ଜବାବ ଦେଲା ।

ତହୁଁ ସିଦ୍ଧାର୍ଥ ବୁଝି ପାରିଲା, ତାହାର ପୁଅ କାତଟାକୁ ପାଣିରେ ଭସାଇ ଦେଇ ଯାଇଛି, ଯଦ୍ଦ୍ୱାରା ସେମାନେ ତାହାକୁ ଅନୁସରଣ କରି ପାରିବେ ନାହିଁ । ବାସୁଦେବ କଟୁରିରେ ବାଉଁଶ କାଟି ନୂଆ କାତଟିଏ ତିଆରି କଲା । ସିଦ୍ଧାର୍ଥ ପୁଅକୁ ଖୋଜି ବାହାରିଲା । ବାସୁଦେବ ବାଧା ଦେଲା ନାହିଁ ।

ବଣରେ ସିଦ୍ଧାର୍ଥର ଅନ୍ୱେଷଣ ବୃଥା ହେଲା । ସେ ଭାବିଲା, ହୁଏତ ପୁଅ ଢେର ଆଗରୁ ବଣ ଟପି ନଗରରେ ପହଞ୍ଚି ଯାଇଥିବ । ତଥାପି ସେ ଧୀରେ ଧୀରେ ଅଗ୍ରସର ହେଲା, କେବଳ ପୁଅକୁ ଆଉ ଥରେ ଦେଖିବା ପାଇଁ । ସେ ବଣ ଅତିକ୍ରମ କରି ନଗରର ଉପକଣ୍ଠରେ ଯାଇ ପହଞ୍ଚିଲା । ସହସା ତାହାର ଖିଆଲ ହେଲା, ସେ

କମଳାର ପ୍ରମୋଦ ଉଦ୍ୟାନର ପ୍ରବେଶ ପଥରେ ଆସି ଠିଆ ହୋଇଛି, ଯେଉଁଠି ଥରେ ସେ ପ୍ରଥମେ କମଳାକୁ ଦେଖିଥିଲା । ଅତୀତର ଛବି ତାହାର ଆଖି ସାମନାରେ ଭାସିଗଲା । ସେ ଦେଖିଲା, ବୌଦ୍ଧ ଭିକ୍ଷୁମାନେ ଉଦ୍ୟାନରେ ସୁନ୍ଦର ଗଛଗୁଡ଼ିକର ଛାଇରେ ଘୁରି ବୁଲୁଛନ୍ତି । ଦୀର୍ଘ ସମୟ ସେଠାରେ ଠିଆ ହୋଇ ସେ ଦାଣ୍ଡଲା ଅତୀତର ବହୁ କଥା ଭାବିବାକୁ ଲାଗିଲା— କମଳାର ପ୍ରଥମ ଚୁମ୍ବନ, କାମସ୍ୱାମୀର ବ୍ୟବସାୟ, ଜୁଆ ଖେଳ, ପଞ୍ଜୁରିର ଗାୟକ ପକ୍ଷୀ, ଜୀବନ ପ୍ରତି ବିତୃଷ୍ଣା, ମରଣର ଆକାଙ୍‌କ୍ଷା, ପବିତ୍ର ଓଁ ର ପୁନର୍ବାର ଶ୍ରବଣ । ସେ ଉପଲବ୍‌ଧି କଲା, ତାହାର ଆଶା ନିର୍ବୋଧ । ସେ ପୁଅକୁ ସାହାଯ୍ୟ କରି ପାରିବ ନାହିଁ । କେହି କାହାକୁ ସଂସାରରେ ସାହାଯ୍ୟ କରି ପାରେ ନାହିଁ ।

ଯେଉଁ ଉଦ୍ଦେଶ୍ୟରେ ସିଦ୍ଧାର୍ଥ ପୁଅର ପଛେ ପଛେ ଧାଇଁ ଆସିଥିଲା, ତାହାର କିଛି ମୂଲ୍ୟ ନାହିଁ । ତାହାର ଅନ୍ତରରେ ଖାଲି ବିରାଟ ଶୂନ୍ୟତା । ବିଷଣ୍ଣ ବଦନରେ ସେ ଭୂଇଁରେ ବସି ପଡ଼ିଲା । ତାହାର ମନରେ ଆନନ୍ଦ ନ ଥିଲା, ପଥ ଚାଲିବାର କୌଣସି ଲକ୍ଷ୍ୟ ନ ଥିଲା । ସେ ଖାଲି ଅପେକ୍ଷା କରିବାକୁ ଲାଗିଲା । କେତେ ପ୍ରହର ପରେ ତାହାର ବେଦନା ତୀବ୍ର ହେଲା । ସେତିକି ବେଳେ ସିଦ୍ଧାର୍ଥ ମୃଦୁ କଣ୍ଠରେ ଓଁ ଉଚ୍ଚାରଣ କଲା ।

କାନ୍ଧ ଉପରେ ହାତର ସ୍ପର୍ଶ ଅନୁଭବ କରନ୍ତେ ସିଦ୍ଧାର୍ଥର ମୋହ ଭାଙ୍ଗିଗଲା । ସେ ଠିଆ ହୋଇ ବାସୁଦେବର ମମତାପୂର୍ଣ୍ଣ ମୁହଁକୁ ଅନାଇ ହସି ଦେଲା । ପୁଣି ଦୁହେଁ ବଣ ଠେଲି ନଦୀ ଘାଟରେ ଯାଇ ପହଞ୍ଚିଲେ । କଅଣ ଘଟିଛି, ସେ ସମ୍ବନ୍ଧରେ କେହି କିଛି ଆଲୋଚନା କଲେ ନାହିଁ । କୁଡ଼ିଆରେ ପାଦ ଦେଲା କ୍ଷଣି ସିଦ୍ଧାର୍ଥ ବିଛଣାରେ ଶୋଇ ପଡ଼ିଲା ।

୧୧

ନିତ ଘାଟରେ ସିଦ୍ଧାର୍ଥ କେତେ ଧରଣର ଲୋକଙ୍କୁ ନଦୀ ପାରି କରିଦିଏ । ପରିବାର ସହ ସେମାନଙ୍କୁ ଦେଖି ସେ ଈର୍ଷା ଦମନ କରି ପାରେ ନାହିଁ । ଆଗ ପରି ତାହାର ଏକଣି ବୁଦ୍ଧିର ଗର୍ବ ନାହିଁ । ଦିନେ ଯାତ୍ରୀମାନଙ୍କୁ ସେ ଅଶ୍ରଦ୍ଧା ମନେ କରୁଥିଲା । କିନ୍ତୁ ଆଜି ତାହାର ମନେ ହୁଏ, ଜନ ସାଧାରଣ ତାହାର ଭାଇ । ସନ୍ତାନ ପାଇଁ ମା'ର ଅନ୍ଧ ବାତ୍ସଲ୍ୟ, ଏକମାତ୍ର ପୁତ୍ର ସ୍ନେହାସକ୍ତ ପିତାର ହାସ୍ୟକର ଅହଙ୍କାର, ଦର୍ପିତା ତରୁଣୀର ଅଳଙ୍କାର କାମନା ଏବଂ ପୁରୁଷର ପ୍ରଶଂସା ଲାଭ ନିମନ୍ତେ ନିରନ୍ତର ଚେଷ୍ଟା— ଏସବୁକୁ ସିଦ୍ଧାର୍ଥ ଆଜି ଏକ ନୂତନ ଦୃଷ୍ଟି କୋଣରୁ ଦେଖିବାକୁ ଶିଖିଛି । ଏସବୁ ସାଧାରଣ ଅଥଚ ପ୍ରବଳ ଜୈବ ଆକାଙ୍କ୍ଷା ସିଦ୍ଧାର୍ଥ ନିକଟରେ ଆଉ ତୁଚ୍ଛ ନୁହେଁ । ଏସବୁ ମଣିଷକୁ ବଞ୍ଚିବାର ପ୍ରେରଣା ଦିଏ, ମହତ କାର୍ଯ୍ୟରେ ଉଦ୍‌ବୁଦ୍ଧ କରେ, ଗୃହ ତ୍ୟାଗ କରି ପଥରେ ବାହାରି ପଡ଼ିବାକୁ ଇଙ୍ଗିତ ଦିଏ । ସେଥି ପାଇଁ ଆଜି ସିଦ୍ଧାର୍ଥ ସାଧାରଣ ଲୋକଙ୍କୁ ଭଲ ପାଏ । ସେମାନଙ୍କ ମଧ୍ୟରେ ସକଳ ଗୁଣ ଅଛି, ନାହିଁ କେବଳ ସକଳ ଜୀବନ ମଧ୍ୟରେ ଐକ୍ୟ-ବୋଧର ଜ୍ଞାନ ।

ଧୀରେ ଧୀରେ ସିଦ୍ଧାର୍ଥ ଅନ୍ତରରେ ପ୍ରକୃତ ଜ୍ଞାନର ସ୍ୱରୂପ ଉପଲବ୍‌ଧି କଲା । କ୍ରମେ କ୍ରମେ ତାହା ପୂର୍ଣ୍ଣତା ଲଭିଲା । ଏତେ ଦିନେ ସେ ବୁଝି ପାରିଲା, ଜୀବନ ବ୍ୟାପୀ ଅନ୍ୱେଷଣର ଲକ୍ଷ୍ୟ —

କେବଳ ଆତ୍ମାର ପ୍ରସ୍ତୁତି ଏବଂ ଜୀବନରେ ଐକ୍ୟବୋଧର ଗୂଢ଼ ଅନୁଭୂତି ।

ଆଜି ବି ପୁଅର କଥା ମନେ ପଡ଼ିଗଲା, ସିଦ୍ଧାର୍ଥର ବ୍ୟଥା କ୍ଲିଷ୍ଟ ହୃଦୟ ତାହା ପାଇଁ ବ୍ୟାକୁଳ ହୁଏ । ଦିନେ ସେହି ପୁରାତନ କ୍ଷତର ବେଦନା ତୀବ୍ର ହେଲା । ନଗରକୁ ଯାଇ ପୁଅକୁ ଖୋଜି ବାହାର କରିବା ଉଦ୍ଦେଶ୍ୟରେ ସେ ନଦୀ କୂଳରେ ନୌକାରୁ ଓହ୍ଲାଇଲା । ଗ୍ରୀଷ୍ମ କାଳ । ଶାନ୍ତ ନଦୀ ଧୀରେ ଧୀରେ ବହି ଚାଲିଛି । ହଠାତ୍ ନଦୀର ବକ୍ଷରୁ ହାସ୍ୟର ଶବ୍ଦ ଭାସି ଆସିଲା । ସେ ଥମକି ଠିଆ ହେଲା, ମୁଣ୍ଡ ନୁଆଁଇ ଜଳ ଉପରେ କାନ ପାରିଲା । ସ୍ୱଚ୍ଛ ଜଳରେ ନିଜ ମୁଖର ପ୍ରତିବିମ୍ବ ଦେଖି ସହସା ତାହାର ମନେ ପଡ଼ିଲା ଏପରି ଆଉ ଏକ ମୁଖ । ଯାହାଙ୍କର ସେହି ମୁଖ, ସିଦ୍ଧାର୍ଥ ଏତେ ଦିନ ଯାଏ ତାହାଙ୍କୁ ଭୁଲି ରହିଥିଲା । ପିତାଙ୍କ ସହିତ ତାହାର ଗଭୀର ଅନ୍ତରଙ୍ଗତା ଥିଲା । ଯୌବନରେ ଦିନେ ସେ ପିତାଙ୍କୁ ସନ୍ନ୍ୟାସ ଗ୍ରହଣର ଅନୁମତି ଦେବାକୁ ବାଧ କରିଥିଲା । ସେହି ହେଉଛି ତାହାର ଶେଷ ବିଦାୟ । ସେ ଆଉ ଘରକୁ ଫେରି ନାହିଁ । ଆଜି ସିଦ୍ଧାର୍ଥ ନିଜର ପୁଅ ପାଇଁ ଯେଉଁ ବେଦନା ଭୋଗ କରୁଛି, ତାହାର ପିତାଙ୍କୁ ମଧ୍ୟ ଦିନେ ତାହା ଭୋଗିବାକୁ ପଡ଼ିଥିଲା । ଦୀର୍ଘ କାଳ ପୁଅକୁ ନ ଦେଖି ନିଃସଙ୍ଗ ପିତା ପରଲୋକ ଗମନ କରିଛନ୍ତି । ତାହାର ବି ଠିକ୍ ସେହି ପରିଣତି ଘଟିବ ।

ନଦୀ ହସୁଥିଲା । ସିଦ୍ଧାର୍ଥ ପୁଣି ନୌକାରେ ଚଢ଼ି କୁଡ଼ିଆକୁ ଫେରି ଆସିଲା । ତାହାର ମନେ ପଡ଼ୁଥିଲା ଥରେ ପିତାଙ୍କ କଥା, ଥରେ ନିଜ ପୁଅର କଥା, ଆଉ ନଦୀ ହସି ହସି ତାହାକୁ ବିଦ୍ରୂପ କରୁଥିଲା । ତାହାର ଅନ୍ତରରେ ଦ୍ୱନ୍ଦ୍ୱ ଜାଗିଲା, ମୁଖରେ ହତାଶାର ଛାୟା ପଡ଼ିଲା । କ୍ଷତଟା ଏବେ ବି ମିଳାଇ ଯାଇ ନ ଥିଲା । ଭାଗ୍ୟ

ବିରୁଦ୍ଧରେ ତାହାର ମନ ବିଦ୍ରୋହ ଘୋଷଣା କଲା । ଦୁଃଖ ଜୟ କରିବାକୁ ତାହାର ଆଶାର ସଞ୍ଚାର ହେଲା !

କୁଡ଼ିଆରେ ବସି ବାସୁଦେବ ଟୋକେଇ ବୁଣୁଥିଲା । ତାହାର ଦୃଷ୍ଟି ଶକ୍ତି କ୍ଷୀଣ ହେବାରୁ, ସେ ଆଉ ନାହା ବାହୁ ନ ଥିଲା । ତାହା ପାଖରେ ବସି ସିଦ୍ଧାର୍ଥ ଗୋଟି ଗୋଟି କରି ନିଜର କଥା ସବୁ ଫିଟାଇ କହିବାକୁ ଲଗିଲା । ଆପଣା ଅନ୍ତରର ରକ୍ତସ୍ରାବୀ ଗୋପନ କ୍ଷତଟା ସେ ବାସୁଦେବକୁ ଦେଖାଇଲା ।

ବାସୁଦେବ ପ୍ରଶାନ୍ତ ବଦନରେ ସ୍ଥିର ଚିତ୍ତରେ ମନଯୋଗ ଦେଇ ସିଦ୍ଧାର୍ଥର ସବୁ କଥା ଶୁଣିଲା । ନିଜ ହୃଦୟକୁ ଉନ୍ମୁକ୍ତ କରୁଁ କରୁଁ ସିଦ୍ଧାର୍ଥର ମନେ ହେଲା, ତାହାର ଶ୍ରୋତା ଚିର ପରିଚିତ ବାସୁଦେବ ଜଣେ ସାଧାରଣ ମଣିଷ ନୁହେଁ । ହଠାତ୍ ପୁଣି ତାହାର ମନେହେଲା, ସେହି ସ୍ଥିର ମୂର୍ତ୍ତିଟି ବାସୁଦେବର ନୁହେଁ । ସେହି ଅଚଞ୍ଚଳ ମୂର୍ତ୍ତି ମଧ୍ୟରେ ସେ ଦେଖିଲା ନଦୀକୁ, ଶାଶ୍ବତ ମହାକାଳକୁ, ସ୍ୱୟଂ ଭଗବାନଙ୍କୁ । ଏହି ପରିବର୍ତ୍ତନ ତାହାକୁ ଅଭିଭୂତ କଲା । ବର୍ତ୍ତମାନ ତାହାର ମନରେ ବାସୁଦେବ ପ୍ରତି ଗଭୀର ଶ୍ରଦ୍ଧା ଜାଗ୍ରତ ହେଲା ।

ସିଦ୍ଧାର୍ଥର କଥା ସରିଲା । ବାସୁଦେବ ପଦେ ହେଲେ କିଛି କହିଲା ନାହିଁ । ତାହାର ମୌନ ମୁଖ ମଣ୍ଡଳରୁ ବିକୀର୍ଣ୍ଣ ହେବାକୁ ଲାଗିଲା ପ୍ରେମ, ପ୍ରଶାନ୍ତି, ଜ୍ଞାନ ଓ ସହାନୁଭୂତି । ସିଦ୍ଧାର୍ଥର ହାତ ଧରି ବାସୁଦେବ ନୀରବରେ ତାହାକୁ ନଦୀ କୂଳକୁ ନେଇଗଲା । ଦୁହେଁ ପାଖାପାଖି ବସିଲେ । ନଦୀ ଆଡ଼କୁ ଚାହିଁ ବାସୁଦେବ ମୃଦୁ ହସିଲା ।

ଦୁହେଁ କାନ ପାରି ନଦୀର ବହୁ ସ୍ୱର ସମ୍ମିଳିତ ସଙ୍ଗୀତ ଶୁଣିଲେ । ସିଦ୍ଧାର୍ଥ ନଦୀକୁ ଅନାଇ ଜଳ ପ୍ରବାହ ଭିତରେ ଦେଖିବାକୁ

ପାଇଲା କେତେ ଛବି— ନିଜର ପୁଅ-ଶୋକାତୁର ନିଃସଙ୍ଗ ପିତା, ଦୂରଗାମୀ ପୁଅ ପାଇଁ ସ୍ନେହାକୁଳ ସିଦ୍ଧାର୍ଥ, ଆଉ କାମନା-ତପ୍ତ ପଥରେ ଏକାକୀ ଯାତ୍ରୀ ନିଜର ପୁଅ । ସମସ୍ତଙ୍କର ଦୃଷ୍ଟି ଆପଣାର ଲକ୍ଷ୍ୟ ଉପରେ ନିବଦ୍ଧ ।

ବାସୁଦେବ ପଚାରିଲା— ଶୁଣି ପାରୁଛ ?

ସିଦ୍ଧାର୍ଥ ମୁଣ୍ଡ ହଲାଇଲା । ସେ ଆହୁରି ଗଭୀର ଭାବରେ ଶୁଣିବାକୁ ଚେଷ୍ଟା କଲା । ପିତାଙ୍କର, ନିଜର, ପୁଅର ଛବି ସବୁ ଏକାକାର ହୋଇଗଲା । କମଳାର ଛବି ଥରେ ଫୁଟି ଉଠି ପୁଣି ନଦୀର ଜଳରେ ଭାସିଗଲା । ଗୋବିନ୍ଦର ଓ ଆହୁରି କେତେ ଲୋକଙ୍କର ଛବି ଦେଖା ଦେଇ ନଦୀରେ ଉଭାଇଗଲା । ସେମାନେ ନଦୀ ସାଙ୍ଗରେ ମିଶିଗଲେ । ସିଦ୍ଧାର୍ଥ ଉପଲବ୍ଧି କଲା, ଏହି ଚିର ପ୍ରବହମାନ ନଦୀ ତାହାର ଆତ୍ମୀୟ ସ୍ୱଜନ ଓ ପରିଚିତ ବ୍ୟକ୍ତିଙ୍କ ଦ୍ୱାରା ଗଢ଼ା ହୋଇଛି । ନଦୀ ଦୀର୍ଘ ଦୁଃଖମୟ ପଥ ଅତିକ୍ରମ କରି ନିଜର ବହୁମୁଖୀ ଲକ୍ଷ୍ୟ ଅଭିମୁଖେ ଧାଇଁ ଚାଲିଛି, ନିତ୍ୟ ନୂତନ ରୂପ ଗ୍ରହଣ କରୁଛି, ଆଉ ଅଖଣ୍ଡ ଗତିଶୀଳତା ତାହାକୁ ଅନନ୍ତ ଯୌବନ ଦେଇଛି । ନଦୀର ସ୍ୱରରେ ନିହିତ ବ୍ୟାକୁଳତା ବଦଳି ଗଲା । ଆନନ୍ଦ ଓ ବେଦନା, ମଙ୍ଗଳ ଓ ଅମଙ୍ଗଳ, ହାସ୍ୟ ଓ କ୍ରନ୍ଦନର ଅଗଣିତ ସ୍ୱର ତାହା ମଧ୍ୟରେ ଏକାକାର ହୋଇଛି ।

ସିଦ୍ଧାର୍ଥ କାନ ପାରି ନିବିଷ୍ଟ ଚିତ୍ତରେ ସବୁ ସ୍ୱର ଶୁଣିଲା । ବର୍ତ୍ତମାନ ତାହାର ମନେ ହେଲା, ସେ ସମ୍ପୂର୍ଣ୍ଣ ଭାବରେ ଶୁଣିବାର କୌଶଳ ଶିଖିଛି । ସେ ଆଉ ବିଭିନ୍ନ ସ୍ୱର ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କଲା ନାହିଁ । ସବୁ ବିଚିତ୍ର ସ୍ୱର ଏକ ହୋଇ ଜୀବନର ସଙ୍ଗୀତ ରଚନା କରିଥିଲା । ସେହି ମିଳିତ ସଙ୍ଗୀତରେ ଥିଲା ଏକମାତ୍ର ବାଣୀ ଓଁ ।

ବାସୁଦେବ ପୁଣି ପଚାରିଲେ— ଶୁଣୁଛ ?

ତାହାର ମୁଖର ଅପୂର୍ବ ଉଜ୍ଜ୍ୱଳ ହାସ୍ୟ ଧୀରେ ଧୀରେ ସିଦ୍ଧାର୍ଥର ମୁଖରେ ପ୍ରତିଭାତ ହେଲା । ତାଙ୍କର କ୍ଷତ ଶୁଖି ଯାଇଥିଲା, ବେଦନା ଆସ୍ତେ ଆସ୍ତେ ମିଳାଇଗଲା, ସୃଷ୍ଟିର ଅଖଣ୍ଡ ଐକ୍ୟ ମଧ୍ୟରେ ନିଜର ବ୍ୟକ୍ତି ସତ୍ତା ଲୀନ ହେଲା ।

ସଙ୍ଗେ ସଙ୍ଗେ ସିଦ୍ଧାର୍ଥ ଭାଗ୍ୟ ବିରୁଦ୍ଧରେ ଆପଣାର ସଂଗ୍ରାମ ବନ୍ଦକଲା । ତାହାର ମୁଖମଣ୍ଡଳର ପ୍ରଶାନ୍ତ ଦୀପ୍ତିରେ ଭାସ୍ୱର ହେଲା ।

ସିଦ୍ଧାର୍ଥର ମୁହଁକୁ ଅନାଇ, ବାସୁଦେବ ଉଠି ଠିଆ ହେଲା । ତାହାର କାନ୍ଧରେ ହାତ ରଖି କୋମଳ କଣ୍ଠରେ ବାସୁଦେବ କହିଲା— ବନ୍ଧୁ, ଏହି ଶୁଭ ମୁହୂର୍ତ୍ତ ପାଇଁ ମୁଁ ଅପେକ୍ଷା କରି ରହିଥିଲି । ସେହି ଶୁଭ କ୍ଷଣ ଆସିଛି । ମୁଁ ଏକ୍ଷଣି ବିଦାୟ ନେଉଛି । ଆଜି ବାସୁଦେବ ଭାବରେ ମୋର ଜୀବନ ଶେଷ ହେଲା । ତୁମ ନିକଟରୁ, କୁଟୀର ନିକଟରୁ ଓ ପ୍ରିୟ ନଦୀ ନିକଟରୁ ମୁଁ ବିଦାୟ ନେଉଛି ।

ସିଦ୍ଧାର୍ଥ ନତ ଜାନୁ ହୋଇ ବାସୁଦେବକୁ ପ୍ରଣାମ କଲା । ସେ ମୃଦୁ ସ୍ୱରରେ ପଚାରିଲା— ତୁମେ କଅଣ ବଣକୁ ଯିବ ?

ବାସୁଦେବ ଦୀପ୍ତ କଣ୍ଠରେ ଜବାବ ଦେଲା— ହଁ, ଯାଉଛି ବଣକୁ, ସୃଷ୍ଟିର ଐକ୍ୟ ପ୍ରବାହରେ ବୁଡ଼ି ଯିବାକୁ ଯାଉଛି ।

ବାସୁଦେବ ଚାଲିଗଲା ।

ସିଦ୍ଧାର୍ଥ ଏକ ଲୟରେ ବାସୁଦେବର ପିଠିକୁ ଚାହିଁ ରହିଲା, ଆଉ ଗଭୀର ଆନନ୍ଦ ଓ ଗାମ୍ଭୀର୍ଯ୍ୟରେ ଲକ୍ଷ୍ୟ କଲା, ତାହାର ପ୍ରତି ପଦକ୍ଷେପରେ ଅଲୌକିକ ଶାନ୍ତି, ମୁଖରେ ଅପୂର୍ବ କାନ୍ତି ଏବଂ ସର୍ବାଙ୍ଗରେ ଆଲୋକର ପ୍ରବାହ ।

୧୨

କମଳା ବୁଦ୍ଧଙ୍କ ଶିଷ୍ୟମାନଙ୍କର ବ୍ୟବହାର ନିମନ୍ତେ ନିଜର ଉଦ୍ୟାନ ଦାନ କରିଥିଲା । ଗୋବିନ୍ଦ ସେଠାରେ ବିଶ୍ରାମ କରୁଥିଲା । ବୃଦ୍ଧ ଜ୍ଞାନୀ ନାଉରିର କଥା ତାହାର କାନରେ ପଡ଼ିଲା । ଉଦ୍ୟାନ ଠାରୁ ନଦୀ ଘାଟ ଦିନକର ବାଟ । ଗୋବିନ୍ଦ ସେହି ନାଉରିକୁ ଦେଖିବା ପାଇଁ ବ୍ୟାକୁଳ ହେଲା । ଯଦିଚ ଗୋବିନ୍ଦ ସଂଘର ନିୟମ ମାନି ଚଳୁଥିଲା, ତାହାର ହୃଦୟର ଅସ୍ଥିରତା ଶାନ୍ତ ହୋଇ ନ ଥିଲା ।

ଗୋବିନ୍ଦ ନଦୀ ଘାଟରେ ପହଞ୍ଚିଲା । ବୁଢ଼ା ନାଉରି ତାହାକୁ ନଦୀ ପାରି କରିଦେଲା । ସେ ପାରିରେ ନାଉରି ଗୋବିନ୍ଦକୁ ପଚାରିଲେ— ତୁମେ ତ ଆମ ଭିତରୁ ଅନେକଙ୍କୁ ନଦୀ ପାରି କରି ଦେଉଛ । ତୁମେ କଅଣ ଆମ ପରି ଠିକ୍ ପଥ ଖୋଜି ବୁଲୁଛ ?

ସିଦ୍ଧାର୍ଥର କ୍ଷୀଣ ଚକ୍ଷୁରେ ହସର ରେଖା ଦେଖାଦେଲା । ସେ ଜବାବ ଦେଲା— ପୂଜନୀୟ ଶ୍ରମଣ, ତୁମେ ବୁଦ୍ଧଙ୍କର ଶିଷ୍ୟ, ଗେରୁଆ ବସନ ପିନ୍ଧିଛ, ବୁଢ଼ା ହେଲଣି, ଏବେ ସୁଦ୍ଧା ଖାଲି ଖୋଜି ବୁଲୁଛ ?

ବୁଢ଼ା ହେଲଣି ସତ । ମାତ୍ର ମୋର ଖୋଜା ଶେଷ ହୋଇ ନାହିଁ । ବୋଧ ହୁଏ ତାହାହିଁ ମୋର ଭାଗ୍ୟ ଲିପି । ତୁମ ଅନୁସନ୍ଧାନର ଅଭିଜ୍ଞତା ମୋତେ ଟିକିଏ ଶୁଣାଇବ କି ?

ମୋର ଅନୁମାନ, ତୁମେ ବୋଧ ହୁଏ ବହୁତ ଖୋଜି ବୁଲିବାରେ ନିଜ ପଥର ପ୍ରକୃତ ନିର୍ଦ୍ଦେଶ ହରାଇଛ । ସେଥି ପାଇଁ ଜୀବନ ଶେଷ ହୋଇ ଆସିଲେ ସୁଦ୍ଧା ତୁମେ କିଛି ପାଇଲ ନାହିଁ ।

କାହିଁକି ଏମିତି ହୁଏ ?

ଏହା ଅତି ସ୍ୱାଭାବିକ । ତୁମେ ଯେଉଁ ବସ୍ତୁ ଖୋଜୁଛ, କେବଳ ତାହା ଦେଖିବା ପାଇଁ ଉତଳା ହୋଇ ରହିବ । ତୁମେ ଆଉ କିଛି ଦେଖି କି ଗ୍ରହଣ କରି ପାରିବ ନାହିଁ । କାରଣ ଏକମାତ୍ର ଲକ୍ଷ୍ୟ ତୁମକୁ ଅନ୍ଧ କରିଛି । ଆଜିକାର ଅର୍ଥ ହେଉଛି ଏକ ଲକ୍ଷ୍ୟରେ ରହିବା, ଆଉ ପାଇବାର ଅର୍ଥ ହେଲା ମୁକ୍ତ ହେବା । ବୋଧ ହୁଏ ତୁମେ ଜଣେ ପ୍ରକୃତ ସନ୍ଧାନୀ ହୋଇଥିବାରୁ ତଳର ବସ୍ତୁସବୁ ତୁମର ଆଖିରେ ପଡ଼ୁ ନାହିଁ ।

ତୁମ କଥା ଠିକ୍ ଭାବରେ ବୁଝି ପାରିଲି ନାହିଁ ।

କେତେ ବର୍ଷ ତଳେ ତୁମେ ଏହି ନଦୀ ଘାଟରେ ଜଣେ ଲୋକକୁ ଶୋଇଥିବାର ଦେଖିଥିଲ ଏବଂ ତାହା ପାଖରେ ଜଗି ବସିଥିଲ । କିନ୍ତୁ ତୁମେ ତାହାକୁ ଚିହ୍ନି ପାରି ନ ଥିଲ, ଗୋବିନ୍ଦ !

ଭିକ୍ଷୁ କଟମଟ କରି ନାଉରିର ମୁହଁକୁ ଅନାଇଲା । ସେ ବିସ୍ମୟରେ ପଚାରିଲା — ତୁମେ କଅଣ ସିଦ୍ଧାର୍ଥ ? ଏଥର ବି ମୁଁ ତୁମକୁ ଚିହ୍ନି ପାରିଲି ନାହିଁ । ପୁଣି ତୁମକୁ ଦେଖି ଖୁବ୍ ଖୁସି ହେଲି । ତୁମେ ଢେର୍ ବଦଳି ଯାଇଛ । ତୁମେ କଅଣ ଏଠାରେ ନାଉରିର କାମ କରୁଛ ?

ହଁ, ମୁଁ ଏଠାକାର ଘାଟ ନାଉରି । ସଂସାରରେ ବହୁ ଲୋକ ନିଜର ରୂପ ବଦଳାନ୍ତି । ମୁଁ ସେମାନଙ୍କ ଭିତରୁ ଜଣେ । ବନ୍ଧୁ, ଆଜି ରାତିକ ମୋ କୁଡ଼ିଆରେ ରୁହ ।

ରାତିରେ ଗୋବିନ୍ଦ ବାସୁଦେବର ବିଛଣାରେ ଶୋଇଲା । ବନ୍ଧୁକୁ ପଚାରି ସେ ତାହା ଠାରୁ ବହୁ କଥା ଜାଣିଲା । ପର ଦିନ ସକାଳେ ବିଦାୟ ନେବା ଆଗରୁ ସେ ଟିକିଏ ସଙ୍କୋଚରେ ପଚାରିଲା — ସିଦ୍ଧାର୍ଥ, ତୁମର କଅଣ ଏମିତି କିଛି ମତ, ବିଶ୍ୱାସ କି ଜ୍ଞାନ

ଉପରେ ଆସ୍ଥା ଅଛି, ଯାହା ତୁମକୁ ବଞ୍ଚିବାରେ ଓ ନ୍ୟାୟ ପଥରେ ଚାଲିବାରେ ସାହାଯ୍ୟ କରେ ?

ସିଦ୍ଧାର୍ଥ ଜବାବ ଦେଲେ— ତୁମେ ତ ଜାଣ, ବନ୍ଧୁ, ଯୌବନରୁ ମୁଁ ଗୁରୁଙ୍କ ଉପରେ ଆସ୍ଥା ହରାଇଛି ଏବଂ ତାଙ୍କର ମତବାଦକୁ ପଛରେ ପକାଇ ନୂତନ ପଥରେ ଆଗୁସାର ହୋଇଛି । ପରେ ବହୁ ଗୁରୁଙ୍କୁ ଭେଟିଛି । ମାତ୍ର ମୋର ମତ ବଦଳି ନାହିଁ । ସୁନ୍ଦରୀ ଗଣିକା, ଧନୀ ବ୍ୟବସାୟୀ ଓ ଜୁଆଡ଼ିମାନଙ୍କୁ ଦିନେ ମୁଁ ଗୁରୁ ଭାବରେ ପାଇଥିଲି । ଦିନେ ବଣରେ ଶୋଇ ପଡ଼ିଥିଲି, ଜଣେ ବୌଦ୍ଧ ଭିକ୍ଷୁ ତୀର୍ଥଯାତ୍ରା ସ୍ଥଗିତ ରଖି ମୋତେ ଜଗି ବସିଥିଲେ, ତାହାଙ୍କ ଠାରୁ ମଧ ଶିକ୍ଷା ଲଭ କରିଛି । କିନ୍ତୁ ଏହି ନଦୀ ଓ ନାଉରି ବାସୁଦେବ ମୋତେ ସବୁ ଠାରୁ ଅଧିକ ଶିକ୍ଷା ଦେଇଛନ୍ତି ।

ସିଦ୍ଧାର୍ଥ, ମୋର ବିଶ୍ୱାସ, ଜୀବନ ଓ ସଂସାର ସମ୍ବନ୍ଧରେ ତୁମ ନିଜର କେତେଗୁଡ଼ିଏ ବିଶେଷ ଚିନ୍ତା ଓ ଧାରଣା ଅଛି । ସେହି ଜ୍ଞାନ ତୁମକୁ ଏକ ସୁସ୍ଥ ଜୀବନ ଯାପନରେ ସାହାଯ୍ୟ କରୁଛି । ନୁହେଁ ?

ବହୁ ସମୟରେ ନୂତନ ଭାବନା ମୋ ମନରେ ଆସିଛି ସତ । କିନ୍ତୁ ଆଜି ସେସବୁ ତୁମକୁ ବୁଝାଇ କହିବା କଠିନ । ଯେଉଁ କଥା ମୋ ମନ ଉପରେ ଗଭୀର ଛାପ ପକାଇଛି, ତାହା ହେଉଛି ଯେ ଜ୍ଞାନ କାହାକୁ ଶିକ୍ଷା ଦିଆଯାଏ ନାହିଁ ।

ପରିହାସ ନୁହେଁ ତ ?

ନା । ଜୀବନଟା ଯାକ ଖୋଜି ଖୋଜି ଯାହା ଆବିଷ୍କାର କରିଛି, ତୁମକୁ ତାହା କହୁଛି । ବିଦ୍ୟା ଅବଶ୍ୟ ଅନ୍ୟକୁ ଦିଆଯାଏ, ମାତ୍ର ଜ୍ଞାନ ନୁହେଁ । ନିଜର ସାଧନା ଦ୍ୱାରା ଜ୍ଞାନ ଲଭ କରିବାକୁ ହୁଏ । ଯୌବନରେ ଏହି ବିଷୟରେ ମୋ ମନରେ ସନ୍ଦେହ ଉପୁଜିବାରୁ

ମୁଁ ଗୁରୁଙ୍କୁ ତ୍ୟାଗ କରି ଚାଲି ଆସିଥିଲି । ମୋର ସମସ୍ତ ଜୀବନର ଅଭିଜ୍ଞତାରୁ କହୁଛି, ଏକମାତ୍ର ଆଂଶିକ ସତ୍ୟକୁ କଥାରେ ପ୍ରକାଶ କରାଯାଏ । ଆମର ଲମ୍ବା ଲମ୍ବା କଥା ସତ୍ୟର ଏକାଂଶ ମାତ୍ର । ସତ୍ୟକୁ ପ୍ରକାଶ କଲେ ସମଗ୍ରତା, ପୂର୍ଣ୍ଣତା ଓ ଐକ୍ୟ କ୍ଷୁଣ୍ଣ ହୁଏ । ଶିଷ୍ୟମାନଙ୍କୁ ଉପଦେଶ ଦେଲା ବେଳେ ବୁଦ୍ଧ ଜଗତକୁ ଭାଗ ଭାଗ କରି ଦେଇଥିଲେ ସଂସାର ଓ ନିର୍ବାଣ, ମାୟା ଓ ସତ୍ୟ ଏବଂ ଦୁଃଖ ଓ ମୁକ୍ତି ଭିତରେ । ଶିକ୍ଷା ଦେବାକୁ ଚାହିଁଲେ ଏହି ପନ୍ଥାଟି ଅନୁସରଣ କରିବାକୁ ହୁଏ । କୌଣସି 'ବ୍ୟକ୍ତି' କି କାର୍ଯ୍ୟ ସମ୍ପୂର୍ଣ୍ଣ ଭାବରେ ସଂସାର କି ନିର୍ବାଣ, ସାଧୁ କି ପାପୀ ନୁହେଁ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ସତ୍ୟ ବୋଲି ଭାବିବା ଫଳରେ ଆମେ ଭୁଲି ବସୁଁ । ସମୟର ଏପରି ବିଭାଗ ଠିକ୍ ନୁହେଁ । ସମୟ ସତ୍ୟ ନ ହେଲେ ଆନନ୍ଦ ଓ ବେଦନା, ମଙ୍ଗଳ ଓ ଅମଙ୍ଗଳର ତଫାତ ମଧ୍ୟ ମିଛ ମାୟା ।

କିପରି ?

ତୁମେ ପାପୀ, ଆଉ ମୁଁ ବି ପାପୀ । ଆମେ ଦିନେ ନିର୍ବାଣ ଓ ବୁଦ୍ଧତ୍ୱ ଲାଭ କରିବା ବୋଲି ଆଶା କରିଛନ୍ତି । ଅଥଚ ଏହି ଦିନେ ଖାଲି ମାୟା । ଅଜ୍ଞ-ସହିତ ଭବିଷ୍ୟତରେ ଏକ ଅନିର୍ଦ୍ଦିଷ୍ଟ ଦିନର ତୁଳନା କରି ଟିକିଏ ସାନ୍ତ୍ୱନା ପାଇବା ଛଡ଼ା ଏହା ଆଉ କିଛି ନୁହେଁ । ପାପୀ ବୁଦ୍ଧତ୍ୱ ପ୍ରାପ୍ତିର ପଥରେ କଦାପି ଯାତ୍ରା କରେ ନାହିଁ । ଭବିଷ୍ୟତର ବୁଦ୍ଧ ବି ଏକ୍ଷଣି ପାପୀର ଅନ୍ତରରେ ଅଛନ୍ତି । ପାପୀ ମଧ୍ୟରେ, ତୁମ ମଧ୍ୟରେ ଓ ସମସ୍ତଙ୍କ ମଧ୍ୟରେ ଲୁଚି ରହିଥିବା ଆଗାମୀ ଦିନର ବୁଦ୍ଧଙ୍କୁ ଚିହ୍ନିବାକୁ ହେବ । ସଦା ବେଳେ ଜଗତ ପୂର୍ଣ୍ଣ, ପ୍ରତି ପାପ ସହିତ ଭଗବାନଙ୍କର କୃପା ଅଛି, ପ୍ରତ୍ୟେକ ବାଳକ ଭିତରେ ଭବିଷ୍ୟତର ବୃଦ୍ଧ ଅଛି, ପ୍ରତ୍ୟେକ ଶିଶୁ ଭିତରେ ମୃତ୍ୟୁର

ବୀଜ ଅଛି, ଆଉ ପ୍ରତ୍ୟେକ ମୁମୂର୍ଷୁଙ୍କ ଭିତରେ ଅନନ୍ତ ଜୀବନର ଇଙ୍ଗିତ ଅଛି । ଡକାୟିତ ଓ ଜୁଆଡ଼ିର ଅନ୍ତରରେ ବି ବୁଦ୍ଧ ଅଛନ୍ତି । ବ୍ରାହ୍ମଣଙ୍କ ଭିତରେ ବି ତସ୍କରାପୃତର ଦେଖା ମିଳେ ! ଗଭୀର ଧ୍ୟାନ ସମୟରେ ସମଗ୍ର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଅଖଣ୍ଡ ରୂପ ଦେଖା ଯାଏ । ସେତେବେଳେ ଜଗତର ସବୁ କିଛି ମଙ୍ଗଳମୟ, ବ୍ରହ୍ମମୟ ଓ ପରିପୂର୍ଣ୍ଣ ବୋଲି ବୋଧ ହୁଏ । ସେଥି ପାଇଁ ମୋ ମତରେ ଜୀବନ ଓ ମରଣ, ପାପ ଓ ପୁଣ୍ୟ, ଜ୍ଞାନ ଓ ନିର୍ବୁଦ୍ଧିତା ଜଗତର ସବୁ କିଛି ହିଁ ଭଲ । ସବୁଥିର ପ୍ରୟୋଜନ ଆମ ଜୀବନରେ ଅଛି । ସବୁକୁ ସହାନୁଭୂତିର ଦୃଷ୍ଟିରେ ଦେଖିବାକୁ ହେବ । ଦେହ ଓ ଆତ୍ମାର ବ୍ୟାକୁଳତା ଦ୍ୱାରା ମୁଁ ଉପଲବ୍ଧି କରିଛି ମୋ ଜୀବନରେ ପାପର, କାମର, ସଞ୍ଚୟର ଓ ନିଃସ୍ୱତାର ପ୍ରୟୋଜନ ଥିଲା ! ଜୀବନରେ ସକଳ ଭଲ ମନ୍ଦ ଅତିକ୍ରମ କରି ଆସିଛି ବୋଲି ମୁଁ ଆଜି ସଂସାରରେ ସୁଖୀ ହୋଇ ପାରିଛି ।

ତଳୁ ଖଣ୍ଡିଏ ଛୋଟ ପଥର ଉଠାଇ ନେଇ ଗୋବିନ୍ଦଙ୍କୁ ଦେଖାଇ ସିଦ୍ଧାର୍ଥ ପୁଣି କହିଲେ— ହୁଏତ ଏହି ପଥର ଖଣ୍ଡିକ ଦିନେ ମାଟି ହେବ, ମାଟିରୁ ଗଛ, ଜନ୍ତୁ ବା ମଣିଷ । ଆଗରୁ ମୁଁ କହୁଥିଲି, ଏହି ପଥର ଖଣ୍ଡିକ କେବଳ ମାୟା । ମାତ୍ର କାଳ ଚକ୍ରର ବିବର୍ତ୍ତନ ଫଳରେ ଦିନେ ଏହା ମଣିଷ ଜନ୍ମ ଆତ୍ମାରେ ରୂପାନ୍ତରିତ ହେବ । ସୁତରାଂ ପଥରର ବି ମୂଲ୍ୟ ଅଛି । ଏବେ ମନେ ହେଉଛି, ଏହି ପଥର ମଧ୍ୟରେ ପ୍ରାଣ, ଈଶ୍ୱର ଓ ବୁଦ୍ଧ ଅଛି । ତେଣୁ ମୁଁ ଏହାକୁ ଭଲ ପାଏ । କାରଣ ମୋନିକଟରେ ଏହା ହେଉଛି ପଥରର ପୂର୍ଣ୍ଣ ରୂପ । ଥାଉ, ପଥରର କଥା ଆଉ କହିବି ନାହିଁ । ମନର ଭାବନା କଥା ଦ୍ୱାରା ଠିକ୍ ଭାବରେ ପ୍ରକାଶ କରି ହୁଏ ନାହିଁ ।

ଗୋବିନ୍ଦ ଘରବରରେ ସବୁ କଥା ଶୁଣି ହସିଲେ— ତାହା ହେଲେ ମୋତେ ପଥରର କଥା କହିଲ ବା କାହିଁକି ?

କୌଣସି ଉଦ୍ଦେଶ୍ୟରେ ଅବଶ୍ୟ କହି ନାହିଁ । ପଥର, ନଦୀ ଓ ସୃଷ୍ଟିର ଯେତେ ବସ୍ତୁ ମୋ ଆଖିରେ ପଡ଼େ ସବୁକୁ ମୁଁ ଭଲ ପାଏଁ । କାରଣ ଏମାନଙ୍କ ଠାରୁ ମୁଁ ଶିକ୍ଷା ଲାଭ କରି ପାରିବ । ଗୋବିନ୍ଦ, ଏବେ ମୁଁ ପଥର ଓ ଗଛକୁ ଭଲ ପାଉଛି । ଏସବୁ ସୃଷ୍ଟିର ବସ୍ତୁ । ବସ୍ତୁକୁ ଭଲ ପାଇ ହୁଏ, ଶବ୍ଦକୁ ନୁହେଁ । ସେଥି ପାଇଁ ମୋ ନିକଟରେ ଉପଦେଶର କିଛି ମୂଲ୍ୟ ନାହିଁ । ସେଥିରେ କଠିନତା, କୋମଳତା, ରଙ୍ଗ, ଗନ୍ଧ, ସ୍ୱାଦ ନାହିଁ । ତାହା କଥା ଛଡ଼ା ଆଉ କିଛି ନୁହେଁ । ସୁତରାଂ ନିର୍ବାଣ ବସ୍ତୁ ନୁହେଁ, ଖାଲି ଗୋଟାଏ କଥା ।

ନା, ବନ୍ଧୁ, ନିର୍ବାଣ ହେଉଛି ଏକ ଚିନ୍ତା, ଧାରଣା ଓ ମତବାଦ ।

ଶବ୍ଦ ଚିନ୍ତାର ବାହକ ହୋଇ ପାରେ । କିନ୍ତୁ ମୁଁ କଥା ଓ ଚିନ୍ତା ଭିତରେ କିଛି ତଫାତ ଦେଖେ ନାହିଁ । ସୃଷ୍ଟିର ପ୍ରତ୍ୟେକ ବସ୍ତୁର ମୂଲ୍ୟ ମୋ ନିକଟରେ ବହୁତ ବେଶି । ମୋ ଆଗରୁ ଏହି ଘାଟରେ ଯେଉଁ ନାଉରି ଥିଲା, ମୁଁ ତାହା ଠାରୁ ତେର କଥା ଶିଖିଛି । ତାହାର ଏକମାତ୍ର ବିଶ୍ୱାସ ଏହି ନଦୀ ଉପରେ ଥିଲା । ସେ ବୁଝିଥିଲା ଯେ ନଦୀ ତାହା ସାଙ୍ଗରେ କଥା କହେ । ନଦୀର ଶବ୍ଦ ଭିତରୁ ସେ ବହୁତ କଥା ଶିଖିଥିଲା । ନଦୀ ହେଉଛି ତାହାର ଗୁରୁ ଓ ଦେବତା । ସେ ଦୀର୍ଘ କାଳ ଉପଲବ୍‌ଧି କରି ପାରି ନ ଥିଲା ଯେ ପବନ, ମେଘ, ପକ୍ଷୀ, ପୋକ ସମସ୍ତେ ଆମକୁ ନୂତନ ଜ୍ଞାନ ଦେଇ ପାରନ୍ତି । ବଣକୁ ଯିବା ଆଗରୁ ସେ ସବୁ ସତ୍ୟ ଜାଣି ପାରିଛି । ବିନା ଗୁରୁରେ ଓ କିଛି ବହି ନ ପଢ଼ି ସେ ଆମ ଠାରୁ ବହୁତ ବେଶି ଜାଣିଛି । ନଦୀ ଉପରେ ତାହାର ଗଭୀର ବିଶ୍ୱାସ ଥିବାରୁ ଏତେ ଜ୍ଞାନ ଲାଭ କରିବା ତାହା ପକ୍ଷରେ ସମ୍ଭବ ହେଲା ।

ବସ୍ତୁ କଅଣ ଖାଲି ମାୟା, ସ୍ୱପ୍ନ ଓ କଳ୍ପନା ନୁହେଁ କି ?

ଯଦି ଗଛ, ପଥର ଓ ନଦୀ ମାୟା ହୁଅନ୍ତି, ତାହା ହେଲେ ମୁଁ ମଧ୍ୟ ମାୟା ହେବି । ଆମେ ସମସ୍ତେ ଏକ ଶ୍ରେଣୀର ହୋଇଥିବାରୁ, ମୁଁ ସେମାନଙ୍କୁ ଏତେ ଭଲ ପାଏଁ । ମୋ ମତବାଦ ଶୁଣି ହୁଏତ ତୁମେ ହସିବ । ଗୋବିନ୍ଦ, ମୋର ତ ମନେ ହୁଏ, ଦୁନିଆରେ ଭଲ ପାଇବା ହିଁ ସବୁ ଠାରୁ ବଡ଼ କଥା । ତେଣୁ ଆମେ ଏ ଦୁନିଆର ପ୍ରତ୍ୟେକ ପ୍ରାଣୀ ଓ ବସ୍ତୁକୁ ଭଲ ପାଇବା ଏବଂ ସମ୍ମାନ କରିବା । ଏହି ସୃଷ୍ଟି ସାଙ୍ଗରେ ଏକ ହୋଇଯିବା ।

ବୁଝିଲି । ବୁଦ୍ଧଦେବ ଏହାକୁ ହିଁ ମାୟା କହିଛନ୍ତି । ସେ ଦୟା, କ୍ଷମା, କରୁଣା ଓ ଧୈର୍ଯ୍ୟ ଶିଖାଇଛନ୍ତି,ମାତ୍ର ପ୍ରେମ ଶିଖାଇ ନାହାନ୍ତି । ସାଂସାରିକ ପ୍ରେମରେ ଜଡ଼ିତ ନ ହେବାକୁ ସେ ଆମକୁ ଉପଦେଶ ଦେଇଛନ୍ତି ।

ତାହା ଜାଣେ । ମୋ ଧାରଣା ସହିତ ଗୌତମଙ୍କ ଉପଦେଶର ପୂରାପୂରି ବିରୋଧ ଅଛି । ସେଥି ପାଇଁ ତାଙ୍କର କଥା ଉପରେ ମୋର ଆସ୍ଥା କମ । କାରଣ ଅସଙ୍ଗତି ଓ ବିରୋଧୀତା ଖାଲି ମିଛ ମାୟା । ମାନବ ଜୀବନର ଅସାରତା ଜାଣି ସୁଦ୍ଧା ଗୌତମ ମଣିଷକୁ ଏତେ ଭଲ ପାଇଛନ୍ତି ଯେ ସେମାନଙ୍କର ଦୁଃଖ ସମୟରେ ସାନ୍ତ୍ୱନା ଓ ଉପଦେଶ ଦେବା ପାଇଁ ନିଜର ଅମୂଲ୍ୟ ଜୀବନ ଉତ୍ସର୍ଗ କରିଛନ୍ତି । ବୁଦ୍ଧଦେବଙ୍କର ଉପଦେଶ ଠାରୁ ତାଙ୍କର ଜୀବନ ଓ କାର୍ଯ୍ୟର ମୂଲ୍ୟ ମୋ ନିକଟରେ ଯଥେଷ୍ଟ ବେଶି । ତାଙ୍କର କାର୍ଯ୍ୟ ଓ ଜୀବନ ପାଇଁ ସେ ମହାପୁରୁଷ ହୋଇଛନ୍ତି ।

ଦୁହେଁ କିଛି କ୍ଷଣ ଚୁପ୍ ରହିଲେ । ତା ପରେ ଗୋବିନ୍ଦ ଯାହାରି ଉଦ୍‌ଯୋଗ କରି ଧୀରେ ଧୀରେ କହିଲା— ସିଦ୍ଧାର୍ଥ, ତୁମର ବହୁତ କଥା ମୋତେ ବିଲକୁଲ୍ ନୂଆ ଲାଗୁଛି । ସେସବୁର

ମର୍ମ ମୁଁ ଏଯାଏ ବୁଝି ପାରି ନାହିଁ । ଯାହା ହେଉ, ତୁମକୁ ଧନ୍ୟବାଦ । ତୁମର ଜୀବନ ଶାନ୍ତିମୟ ହେଉ ।

ତଥାପି ଗୋବିନ୍ଦ ସିଦ୍ଧାର୍ଥ ପ୍ରତି ଗଭୀର ଆକର୍ଷଣ ଅନୁଭବ କଲା । ତାହାର ଅଚଞ୍ଚଳ ମୂର୍ତ୍ତି ସାମନାରେ ଧୀରେ ଧୀରେ ଗୋବିନ୍ଦର ମଥା ନଇଁଗଲା । ସେ କହିଲା— ସିଦ୍ଧାର୍ଥ, ଆମେ ବୁଢ଼ା ହେଲେଣି । ହୁଏତ ଆମର ଆଉ ଦେଖା ହେବ ନାହିଁ । ବନ୍ଧୁ, ମୁଁ ଆଜି ଦେଖୁଛି, ତୁମେ ଶାନ୍ତି ପାଇଛ । ମୁଁ ଶାନ୍ତି ପାଇ ନାହିଁ । ମୋ ପଥ ବଡ଼ ଦୁର୍ଗମ ଓ ଅନ୍ଧକାର । ଜୀବନଟିରେ ଅବଶିଷ୍ଟ ପଥ ଚାଲିବା ପାଇଁ ମୋତେ କିଛି ପାଥେୟ ଦିଅ, ଆଲୋକ ଦିଅ ଆଶା ଦିଅ ।

ସିଦ୍ଧାର୍ଥ ନୀରବରେ ପ୍ରଶାନ୍ତ ହସ ହସ ମୁଖ ଟେକିଲା ଏବଂ ଗୋବିନ୍ଦର କାନ ପାଖରେ ଚୁପି ଚୁପି କହିଲା—ଆହୁରି ପାଖକୁ ଘୁଞ୍ଚି ଆସ । ମୁହଁ ନୁଆଁଅ, ମୋ କପାଳରେ ଚୁମା ଦିଅ ।

ଗୋବିନ୍ଦ ଅବାକ ହେଲା । ତଥାପି ଏକ ମହାନ ପ୍ରେମ ତାହାକୁ ସିଦ୍ଧାର୍ଥର ନିର୍ଦ୍ଦେଶ ପାଳନ କରିବାକୁ ବାଧ୍ୟ କଲା । ସେ ନଇଁ ପଡ଼ି ସିଦ୍ଧାର୍ଥର କପାଳ ଚୁମ୍ବନ କଲା । ତତ୍‌କ୍ଷଣାତ ସେ ଆଉ ସିଦ୍ଧାର୍ଥର ମୁଖ ଦେଖିବାକୁ ପାଇଲା ନାହିଁ । ଦେଖିଲା ଆଉ ଗୋଟିଏ ମୁଖ, ଅନେକ ମୁଖ, ହଜାର ହଜାର ମୁଖର ଅବିରାମ ସ୍ରୋତ । ପ୍ରତ୍ୟେକ ମୁଖ ରୂପ ପରିବର୍ତ୍ତନ କରି ନୂଆ ହେଲା । ତଥାପି ସବୁହିଁ ଯେମିତି ସିଦ୍ଧାର୍ଥର ମୁଖ । ନାନା ପ୍ରକାରର ମଣିଷ, ପଶୁ, ପକ୍ଷୀଙ୍କର ଅଗଣିତ ମୁଖର ଶୋଭାଯାତ୍ରା । ଗୋବିନ୍ଦ ଦେଖି ପାରିଲା, ସିଦ୍ଧାର୍ଥର ମୁଖ ଉପରେ ଏକ ସ୍ୱଚ୍ଛ ହାସ୍ୟର ଆବରଣ, ଯାହା ଅଗଣିତ ମୂର୍ତ୍ତିକୁ ଏକ ସୂତ୍ରରେ ଗୁନ୍ଥି ଛି । ଏହି ଅଲୌକିକ ହାସ୍ୟ ଅବିକଳ ବୁଦ୍ଧଦେବଙ୍କର ଶାନ୍ତ କୋମଳ ଦୁର୍ଜ୍ଞେୟ, ବିଜ୍ଞ, କରୁଣ କମ୍ବା ବିଦ୍ରୂପାତ୍ମକ ହାସ୍ୟ ପରି ବିଚିତ୍ର ଗୁଣ ସମ୍ପନ୍ନ ।

ଗୋବନ୍ଦ ଭୁଲିଗଲା ସମୟର ଅସ୍ତିତ୍ୱ, ମୁଖର ଶୋଭାଯାତ୍ରା । ସେ ସିଦ୍ଧାର୍ଥଙ୍କୁ ଗୌତମଙ୍କୁ ଦେଖୁଛି, କିନ୍ତୁ ଠଉରାଇ ପାରିଲା ନାହିଁ । ସ୍ୱର୍ଗରୁ ଖରିଟିଏ ଆସି ଗୋବନ୍ଦର ଅନ୍ତରରେ ଗଭୀର ଭାବରେ ବିଦ୍ଧ ହୋଇଛି । ସେହି ଆଘାତ ତାହାକୁ ସମ୍ମୋହିତ ଓ ଉଲ୍ଲସିତ କରିଛି । ସିଦ୍ଧାର୍ଥର ପ୍ରଶାନ୍ତ ମୁଖ ଉପରେ ନଇଁ ପଡ଼ି ଗୋବନ୍ଦ କିଛି କ୍ଷଣ ନୀରବରେ ଚାହିଁ ରହିଲା । ଅଗଣିତ ମୁଖର ଶୋଭାଯାତ୍ରା ଅଦୃଶ୍ୟ ହୋଇ ଯାଇଥିଲେ ସୁଦ୍ଧା ସିଦ୍ଧାର୍ଥର ମୁଖର ପ୍ରଶାନ୍ତି ବଦଳିଲା ନାହିଁ । ଅବିକଳ ବୁଦ୍ଧଙ୍କ ପରି ତାହାର ମୁଖରେ ଶାନ୍ତ କୋମଳ ହାସ୍ୟ ଲାଗି ରହିଥିଲା ।

ଶ୍ରଦ୍ଧାରେ ଗୋବନ୍ଦର ମଥା ଆହୁରି ନତ ହେଲା । ତାହାର ଶୁଖିଲା ଗାଲ ଉପରେ ଅବାଧ ଲୋତକର ଧାରା ଝରି ପଡ଼ିଲା । ଏକ ମହତ ସର୍ବବ୍ୟାପୀ ପ୍ରେମର ଅନୁଭୂତି ତାହାକୁ ଅଭିଭୂତ କଲା । ସିଦ୍ଧାର୍ଥର ପ୍ରଶାନ୍ତ ମୂର୍ତ୍ତିକୁ ଚାହିଁ ଏକା ସାଙ୍ଗରେ ତାହାର ମନେ ପଡ଼ିଲା— ଯାହା କିଛି ସେ ଭଲ ପାଇଛି ଏବଂ ପବିତ୍ର ବୋଲି ଗ୍ରହଣ କରିଛି । ତାହା ସାମନାରେ ଯେଉଁ ଲୋକଟି ସ୍ଥିର ହୋଇ ବସିଥିଲା, ଗୋବନ୍ଦର ସବୁ ମହତ ଆଦର୍ଶ ଓ ଅଭିଜ୍ଞତା ତାହାରି ଭିତରେ ଏକାକାର ହୋଇଗଲା ।

ତହୁଁ ଗୋବନ୍ଦ ମୁଣ୍ଡ ନୁଆଁଇ ଭୂଇଁରେ ପ୍ରଣାମ କଲା ।

ଯଜ୍ଞଦତ୍ତ ଶର୍ମା

# ପ୍ରାୟଶ୍ଚିତ୍ତ

## ୧

ଦିନେ ବିମଳ ବାବୁ ଓ କମଳା ଦୁହେଁ ଚୁପ୍‌ଚାପ ବସିଥିଲେ— ଏକାବେଳେ ମୌନ । ବହୁ କ୍ଷଣ ପରେ ବିମଳ ବାବୁ ଶେଷ ଅବଧି ନୀରବତା ଭଙ୍ଗ କଲେ— କମଳା, ତୁମେ କାଲି ରମେଶ ସାଙ୍ଗରେ ନ ଯାଇଥିଲେ ଭଲ ହୋଇ ଥାଆନ୍ତା । ମୁଁ ଏସବୁ ଆଦୌ ପସନ୍ଦ କରେ ନା । ନ ଯାଇଥିଲେ ବା ତୁମର ଏମିତି କି କ୍ଷତିଟାଏ ହୋଇ ଥାଆନ୍ତା ?

କମଳା ଦେବୀ ବହୁ କଷ୍ଟରେ ନିଜକୁ ସଂଯତ କଲେ । ସେ ପଲଙ୍କରୁ ଉଠି ଆସି ସାମନା ସୋଫାଟାରେ ବସି ପଡ଼ିଲେ । ତା ପରେ ସତର୍କ ଭାବରେ ନିଜକୁ ସମ୍ଭାଳି ନେଇ ସେ କହିଲେ— ମୋତେ ତୁମେ ଦୁର୍ବଳତାର ଚୂଡ଼ାନ୍ତ ନ କରି ଛାଡ଼ିବ ନାହିଁ । ତୁମେ ଯେ ମୋର ଚରିତ୍ର ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରୁଛ, ତୁମର ଏଥିରେ କି ଅଧିକାର ଅଛି ? ତୁମେ ତ ନିଜେ ରମେଶକୁ ଭାଇ ପରି ନୁହେ, ପୁଅ ପରି ମଣିଷ କରିଛ । ଆଜି ତୁମ ଭିତରେ ଏ କି ଧରଣର ପରିବର୍ତ୍ତନ ଦେଖା ଦେଇଛି !

ବିମଳ ବାବୁ କମଳା ଦେବୀଙ୍କ କଥାର କିଛି ଜବାବ ଦେଲେ ନାହିଁ । ସେ ଉଠି ପଡ଼ି ଚୁପ୍‌ଚାପ ବାହାରକୁ ଚାଲି ଗଲେ ।

ବିମଳ ବାବୁଙ୍କର ଏହି ଆକସ୍ମିକ ପରିବର୍ତ୍ତନର କାରଣ କମଳା ଦେବୀ ଠିକ୍ ଭାବରେ ବୁଝି ପାରିଲେ ନାହିଁ। ତାଙ୍କର ବୟସ ମାତ୍ର ତେଇଶ ବର୍ଷ, ଆଉ ବିମଳ ବାବୁଙ୍କର ଅଣ୍ଡିରିଶ। ସୁତରାଂ ଦୁହିଁଙ୍କର ଦୃଷ୍ଟି ଭଙ୍ଗୀରେ ଆକାଶ ପାତାଳ ପ୍ରଭେଦ ଅଛି। ଜଣଙ୍କର ଜୀବନରେ ଯୌବନର ସୁଅ ବହୁଛି, ଆଉ ଅନ୍ୟ ଜଣଙ୍କର ଯୌବନ ଖସିଲା ଉପରେ। ସୁତରାଂ ସେମାନଙ୍କର ଜୀବନ ପ୍ରବାହ ଏକ ପ୍ରକାର ହୋଇ ପାରିଲା ନାହିଁ।

ବିମଳ ବାବୁଙ୍କର ମନ ସଦା ବେଳେ ସଶଙ୍କିତ।

ଲକ୍ଷ୍ନୌ ମେଡ଼ିକାଲ କଲେଜରୁ ସଦ୍ୟ ପାଶ କରି ଆସିଥିବା ରମେଶକୁ ବିମଳ ବାବୁ ପଚାରିଲେ— ରମେଶ, ଏବେ ତୁ ଚାକରୀ କରିବୁ ନା ସହରରେ ଗୋଟାଏ କ୍ଲିନିକ ଖୋଲିବୁ ? କଅଣ ତୋର ଇଚ୍ଛା ?

ରମେଶ ମୃଦୁ ହସି ଜବାବ ଦେଲା— ନା, ଭାଇ, ସେହି ଦୁଇଟା ଭିତରୁ କେଉଁଟା ନୁହେଁ। ସହରୀ ଜୀବନ ମୋତେ ଆଦୌ ଭଲ ଲାଗେ ନାହିଁ।

ରମେଶର ଜବାବ ଶୁଣି ବିମଳ ବାବୁଙ୍କର ଛାତି ବରଡ଼ା ପତର ପରି ଥରିବାକୁ ଲାଗିଲା। ତାଙ୍କର ମନେ ହେଲା, ରମେଶ ଓ କମଳା ଦେବୀ ଯେମିତି ଗୋଟାଏ କିଛି ଷଡ଼ଯନ୍ତ୍ର କରୁଛନ୍ତି। ରମେଶର ଏଠାରେ ରହିବାକୁ ସେ ଆଦୌ ପସନ୍ଦ କଲେ ନାହିଁ। ଅପର ପକ୍ଷରେ ରମେଶର ଏତାଦୃଶ ସିଦ୍ଧାନ୍ତ ଶୁଣି କମଳା ଦେବୀଙ୍କର ଆନନ୍ଦର ସୀମା ରହିଲା ନାହିଁ। ପର ଦିନ କମଳା ଦେବୀ ଠିକ୍ ରେଷେଇ ସାରିଲା ବେଳକୁ ରମେଶ ଆସି ହାଜର ହୋଇଗଲା। ରମେଶ ବେଶ୍ ପ୍ରଫୁଲ୍ଲ ଜଣା ଯାଉଥିଲା। ସେ ଆଗେଇ

ଆସି କହିଲି— ଭାଉଜ, ଗୋଟାଏ ଦୋକାନ ଘର ଭଡ଼ା ନେଲି । ଭାରି ସୁନ୍ଦର ଜାଗା । ତୁମେ ଦେଖିଲେ ନିଶ୍ଚୟ ଖୁବ୍ ଖୁସି ହେବ ।

ଠିକ୍ ସେତିକି ବେଳେ ବିମଳ ବାବୁ ମଧ୍ୟ ଘରକୁ ପ୍ରବେଶି ଆସିଲେ । ସେ କହିଲେ— ଶୁଣିଛ କମଳା ? ରମେଶ ଆଉ ସହରର ମୁହଁ ମାଡ଼ିବ ନାହିଁ । ଏହି ନିପଟ ମଫସଲି ଗାଁରେ ବସି ଡାକ୍ତରୀ କରିବ । ଡାକ୍ତରୀ କଲା ପରେ ଯେତିକି ସମୟ ତାହାର ବଳିବ, ସେହି ସମୟଟା ସେ ତୁମର ସେବା କରି ସଦ୍ ବ୍ୟବହାର କରିବ । ତାଙ୍କର ଏହି ଶେଷ ପଦକ କଥାରେ ଟିକିଏ ବ୍ୟଙ୍ଗର ସ୍ୱର ପୂରି ରହିଥିଲା ।

ବିମଳ ବାବୁ ସେଠାରୁ ଚାଲିଗଲା ଉତ୍ତାରୁ ରମେଶ କମଳା ଦେବୀଙ୍କୁ କହିଲା – ଭାଉଜ, ଆଜି ଭାଇଙ୍କର ଅନ୍ୟ ରକମ କିଛି ହେଲା ଭଳି ତ ଜଣା ପଡ଼ିଲା । ସେ କାହିଁକି ଜୋର ଦେଇ କଥା ଗୁଡ଼ାକ କହିଲେ । ଆଜି ତାଙ୍କର କଥାରେ ଯେମିତି କିଛି ବାଗ ନାହିଁ, କି ଟିକିଏ ହେଲେ ମିଠା ନାହିଁ ।

ରମେଶର କଥା ଶୁଣି କମଳା ଦେବୀ ଟିକିଏ ଗମ୍ଭୀର ହୋଇ କହିଲେ— ସହରକୁ ନ ଯାଇ ତୁମେ ତୁମ ଭାଇଙ୍କ ମନରେ ଖୁବ୍ ବଡ଼ ରକମର ଆଘାତ ଦେଇଛ । ତୁମେ ସହରକୁ ଯାଇ କୌଣସି ବଡ଼ ଡାକ୍ତରଖାନାର ସର୍ଜନ ହେବ, କିମ୍ବା ବଡ଼ ସହରରେ ଜଣେ ନାମଜାଦା ଡାକ୍ତର ହେବ, ସେ ସେହି ରକମ ଗୋଟାଏ କିଛି ଆଶା ମନରେ ପୋଷଣ କରିଥିଲେ । କିନ୍ତୁ ତୁମେ ତୁମ ଭାଇଙ୍କର ସବୁ ଆଶା ପଣ୍ଡ କରିଦେଲ ।

କମଳା ଦେବୀ ଓ ରମେଶଙ୍କୁ ବାଣ୍ଟିଶାଳରେ ବସି ରହିବାର ଦେଖି, ବିମଳ ବାବୁ ଘରୁ ବାହାରି ଗଲେ । ସେ ବହୁତ ସମୟ ଏଣେ ତେଣେ ବୁଲି ଘୁରି କଲେ, କିନ୍ତୁ କୌଣସିଥିରେ ସେ ଶାନ୍ତି

ପାଇଲେ ନାହିଁ । ତାଙ୍କର ମାନସିକ ଉଦ୍‌ବେଗ କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ସେ ଅନିର୍ଦ୍ଦିଷ୍ଟ ଭାବରେ ରାସ୍ତାରେ ଚାଲୁଥିଲେ ।

ଘର ଠାରୁ କିଛି ଦୂର ଚାଲି ପରେ ହଠାତ୍ ବାଟରେ ତାଙ୍କର ଶେଠ ହରିହର ପ୍ରସାଦ ସହିତ ଭେଟ ହେଲା । ତାହାଙ୍କୁ ଦେଖି ଶେଠଜୀ ଅତି ଉତ୍ସାହରେ ହସି ହସି କହିଲା— ବିମଳ ବାବୁ ! ରମେଶ କ୍ଲିନିକ ପାଇଁ ଗୋଟାଏ ବଡ଼ିଆ ଭଡ଼ା ଘର ଠିକ୍ କରିଛି, ଆପଣ ଜାଣନ୍ତି ତ ? ଆସନ୍ତୁ, ଟିକିଏ ଦେଖିବେ ଆସନ୍ତୁ, ଆପଣଙ୍କର ନିଶ୍ଚୟ ପସନ୍ଦ ହେବ ।

ରମେଶର କ୍ଲିନିକର ସବୁ ଆସବାବପତ୍ର ନିଜେ ବିମଳ ବାବୁ ଠିଆ ହୋଇ ତିଆରି କରାଇଲେ । ପ୍ରତ୍ୟେକ ଜିନିଷ ସୁନ୍ଦର ଓ ରୁଚିକର ହେଲା । ସବୁ କାମ ସରିଲା ପରେ ସେହି କ୍ଲିନିକଟି ନିକଟବର୍ତ୍ତୀ ଅଞ୍ଚଳ ଭିତରେ ଗୋଟିଏ ଦର୍ଶନୀୟ ବସ୍ତୁରେ ପରିଣତ ହେଲା ।

୨

ରମେଶର ଡାକ୍ତରଖାନାରେ ବ୍ୟବସାୟ ଖୁବ୍ ଜମି ଗଲାଣି । କମଳା ଦେବୀଙ୍କର ତ ପୁଅ ବାର ପଡ଼ିଲା । ସଂସାରରେ ଟଙ୍କା ପଇସାର ଅଭାବ ନାହିଁ । ସ୍ୱାମୀ ଓ ଦିଅରଙ୍କର ପ୍ରଚୁର ଆୟ ।

କ୍ଲିନିକରୁ ବାହାରି ସିନେମା ଘର ସାମନାରେ ଯାଉଁ ଯାଉଁ ରମେଶ କହିଲା— ଭାଉଜ, ଆଜି ଠାରୁ ସିନେମାରେ ଗୋଟାଏ ନୂଆ ଛବି ଚାଲିଲା । ଶୁଣିଛି, ଛବିଟା ଖୁବ୍ ଭଲ ହୋଇଛି । ଦେଖିବାକୁ ଯିବ ?

କମଳା ଦେବୀ ମୃଦୁ ହସି ଜବାବ ଦେଲେ— ଦେଖୁଛି, ଆଜିକାଲି ସିନେମାର ଭୂତ ତୁମର କାନ୍ଧ ଉପରେ ସବାର ହୋଇଛି । ଘରକୁ ଫେରି ଆମର ଦେଖା ନ ପାଇଲେ ତୁମ ଭାଇ ମନରେ କିଛି ଖରାପ ଭାବି ପାରନ୍ତି । କାଲି ସିନେମା ଦେଖିଲେ ଚଳିବ ।

ନା, ଭାଉଜ, ଆମେ ଆଜି ସିନେମା ଦେଖିବାକୁ ଯିବା— ରମେଶ ଗ୍ରେଷ୍ଠ ପିଲିଙ୍କ ପରି ଜିଦ୍ଧ କଲା ।

କମଳା ଦେବୀ ଆଉ ଅରାଜି ହୋଇ ପାରିଲେ ନାହିଁ । ଦୁହେଁ ସିନେମା ଦେଖି ସାରି ରାତିରେ ଘରକୁ ଫେରିଲେ ।

ସେମାନେ ଘରକୁ ଫେରିଲା ବେଳକୁ ବିମଳ ବାବୁ ନିଜ କୋଠରୀରେ ପଦଚାରଣ କରୁଥିଲେ । ଦୁହେଁ ପ୍ରଥମେ ସେଠାରେ ଯାଇ ହାଜର ହେଲେ । ବିମଳ ବାବୁ ଭିତରେ ଭିତରେ ରାଗରେ ଜଳୁଥିଲେ ଏବଂ ଗୁମ ମାରି ରହିଥିଲେ । ରମେଶର ଦୃଷ୍ଟିରେ ତାଙ୍କର ସେହି ମନର ଅବସ୍ଥା ଧରା ନ ପଡ଼ିଲେ ସୁଦ୍ଧା, କମଳା ଦେବୀଙ୍କ ନଜରରୁ ତାହା ଏଡ଼ି ଦେଇ ପାରିଲା ନାହିଁ । ବିନା ବାକ୍ୟ ବ୍ୟୟରେ ସେ ନିଜ ଘରକୁ ଚାଲି ଗଲେ ।

ରାତି ବେଶି ହୋଇ ଯାଇଥିଲା । ଖିଆ ପିଆ ସାରି ଯେତେ ଯେଝା ର କୋଠରୀକୁ ଶୋଇବା ପାଇଁ ଚାଲି ଗଲେ । କମଳା ଦେବୀ ନିଜର ଶୟନ କକ୍ଷକୁ ଆସିଲେ । ସେତେ ବେଳେ ବିମଳ ବାବୁ ଚିନ୍ତାରେ ଏମିତି ନିସ୍ପୃହ ଭାବରେ ପଡ଼ି ରହିଥିଲେ ଯେ ମନେ ହେଲା, ସତେ ଯେମିତି ସେ ନିଜ ସ୍ତ୍ରୀର ଉପସ୍ଥିତି ଅନୁଭବ କରି ପାରି ନ ଥିଲେ । କମଳା ଦେବୀ ଗମ୍ଭୀର ଭାବରେ ସ୍ୱାମୀଙ୍କୁ କହିଲେ — ତୁମେ ତୁମ ଜୀବନର ଅସୀମ ଶାନ୍ତିକୁ ସୀମାହୀନ ଅଶାନ୍ତିରେ ପରିଣତ କରିବାକୁ ବସିଛ । ମୁଁ ଆଉ ଥରେ ତୁମକୁ ମନେ ପକାଇ ଦେଉଛି

ଯେ ନିଜ ଲୋକଙ୍କୁ କଦାପି ଏମିତି ଅବିଶ୍ୱାସର ଦୃଷ୍ଟିରେ ଦେଖିବା ଉଚିତ ନୁହେଁ । ମୁଁ ବର୍ତ୍ତମାନ ତୁମର ଏବଂ ଭବିଷ୍ୟତରେ ମଧ୍ୟ ତୁମରି ହୋଇ ରହିଥିବି । ରମେଶ ତ ଆମର ପୁଅ ପରି ।

ରମେଶ ସ୍ୱାଭାବିକ ଭାବରେ ସକାଳେ ବିଛଣାରୁ ଉଠିଲା ଏବଂ ତା ପରେ ଯଥା ରୀତି ଯାଇ ଭାଇ ଓ ଭାଉଜଙ୍କୁ ପ୍ରଣାମ କଲା । ସେମାନେ ବି ନିତି ଦିନ ପରି ତାହାକୁ ଆଶୀର୍ବାଦ କଲେ । କିନ୍ତୁ ଭାଉଜଙ୍କର ବ୍ୟବହାରରେ ଆଜି ଅନ୍ୟ ଦିନର ମାଧୁର୍ଯ୍ୟର ସ୍ୱାଦ ନ ଥିଲା । ସେ ନିଜେ ଜଳଖିଆ ନେଇ ଆସିଲେ ନାହିଁ, ଚାକରର ହାତରେ ପଠାଇ ଦେଲେ । ଚାକର ଟେବୁଲ ଉପରେ ଜଳଖିଆ ଥୋଇ ଦେଇ ଚାଲିଗଲା । ରମେଶ କିଛି କ୍ଷଣ ଭାଉଜଙ୍କର ଆଗମନକୁ ଅପେକ୍ଷା କରି ରହିଲା । କିନ୍ତୁ ସେ ଆଉ ଆସିଲେ ନାହିଁ । ଏଣେ ଚାହା ଥଣ୍ଡା ହୋଇ ଗଲା । କିଛି ନ ଖାଇ ଲୁଗା ପଟା ପିନ୍ଧି ରମେଶ ଯଥା ସମୟରେ ତାହାର ଡାକ୍ତରଖାନାକୁ ବାହାରି ଗଲା ।

ରମେଶର ଅଭିମାନ ଓ ମନୋବେଦନା ତାହାର କାର୍ଯ୍ୟ କଳାପ ଭିତରେ ପ୍ରକଟିତ ହେଲା । କମଳା ଦେବୀ ତାହା ଲକ୍ଷ୍ୟ କଲେ । ଏଥିରେ ସେ ଖୁବ୍ ଆଘାତ ପାଇଲେ ସତ, କିନ୍ତୁ ବିମଳ ବାବୁଙ୍କୁ ଅତିଶୟ ଆନନ୍ଦିତ ହେବାର ଦେଖି ସେ ଟିକଏ ସାନ୍ତ୍ୱନା ଲାଭ କଲେ ।

କମଳା ଦେବୀ ମଧ୍ୟ ସେ ଦିନ ଜଳଖିଆ ଖାଇଲେ ନାହିଁ । ସ୍ୱାମୀଙ୍କୁ ଜଳଖିଆ ଓ ଚାହା ଦେଇ ସାରି, ସେ ହାଣ୍ଡିଶାଳକୁ ଯାଇ ଏହି ଘଟଣାର ପରିଣାମ ସମ୍ବନ୍ଧରେ ବସି ବସି ଭାବିବାକୁ ଲାଗିଲେ ।

ରମେଶ ଡାକ୍ତରଖାନାରେ ପହଞ୍ଚି ଦେଖିଲା, ରୋଗୀଙ୍କର ଭିଡ଼ ଲାଗିଛି । ଆଜି ସେ ନିଜେ ଖାଲି ଡାକ୍ତର ନୁହେଁ, ରୋଗୀମାନଙ୍କ ଭିତରୁ ମଧ୍ୟ ଜଣେ । ସେ ନିଜର ମୁଣ୍ଡ ଠିକ୍ ରଖି ଜଣ ଜଣ କରି

ରୋଗୀ ଦେଖା ପ୍ରାୟ ଶେଷ କଲା । ଯେତେ ଦୂର ସମ୍ଭବ ସେ ସେମାନଙ୍କ ସାଙ୍ଗରେ ଖୁବ୍ କମ କଥା ହେଲା ।

ରମେଶ କାମ ସାରି ଦେଇ ଉଠିବୁ ଉଠିବ ହେଉଛି, ଠିକ୍ ଏତିକ ବେଳେ ଶେଠ ହରିହର ପ୍ରସାଦଙ୍କର ଝିଅ କୁମୁଦ ଧଇଁ-ସଇଁ ହୋଇ ତାହା ଆଡ଼କୁ ଧାଇଁ ଆସୁଥିବାର ଦେଖା ଗଲା । ତାହାର ମୁଖ ମଣ୍ଡଳରେ ଉଦ୍‌ବେଗର ଚିହ୍ନ ଅତି ପରିଷ୍କାର ଭାବରେ ଫୁଟି ଉଠିଥିଲା ।

କୁମୁଦର ଆଖି ଦୁଇଟିରେ ରାତି ଜାଗରଣର କ୍ଳାନ୍ତି ଭରି ରହିଥିଲା । ତାହାର କଣ୍ଠ ରୁଦ୍ଧ ହୋଇ ଆସୁଥିଲା ।

ତାହାକୁ ଦେଖି ପାରି ରମେଶ ଚଉକିରୁ ଉଠି ପଡ଼ି ପଚାରିଲା — କୁମୁଦ ! ତୁମ ବାପା କେମିତି ଅଛନ୍ତି ? ତୁମକୁ ତ ଅପେକ୍ଷା କରି ରହିଥିଲି ।

ତାହାର କଥାରେ କୁମୁଦର ଦୁଇ ଗାଲ ଉପରେ ଲୋତକର ଧାରା ଝରି ପଡ଼ିଲା । ଯେତେ ବେଳେ କୁମୁଦ ଡାକ୍ତରକୁ ସାଙ୍ଗରେ ନେଇ ଘରକୁ ଫେରିଲା, ସେତେ ବେଳେ ଶେଠଜୀର ଅବସ୍ଥାର କୌଣସି ଉଲ୍ଲେଖଯୋଗ୍ୟ ଉନ୍ନତି ହୋଇ ନ ଥିଲା । ସେ ଅଚେତ ହୋଇ ପଡ଼ି ରହିଥିଲେ । ତାହାର ଶ୍ୱାସ ପ୍ରଶ୍ୱାସ କ୍ରମେ କ୍ରମେ ଖୁବ୍ କ୍ଷୀଣ ହୋଇ ଆସୁଥିଲା ।

ଶେଠଜୀଙ୍କୁ ପରୀକ୍ଷା କରି ସାରି ଡାକ୍ତର ରମେଶ ବୈଠକ ଖାନାରେ ଆସି ହାଜର ହୁଅନ୍ତେ, ହଠାତ୍ ତାହାର ଚେହେରା ଉପରେ କୁମୁଦର ଦୃଷ୍ଟି ପଡ଼ିଲା । ତାହାର ମୁଖ ଓ ଆଖିରୁ କ୍ଳାନ୍ତି ଝରି ପଡୁଥିଲା ।

କୁମୁଦ ରମେଶକୁ କହିଲା— ଆଜ ଆପଣ ଖୁବ୍ କ୍ଳାନ୍ତ ହେଲା ଭଳି ଜଣା ଯାଉଛନ୍ତି । ଏ ଘରରେ ଟିକିଏ ଖାଇ ଯାଆନ୍ତୁ ବୋଧ ହୁଏ । ଆଣିବି କପେ ?

ରମେଶ ଜବାବ ଦେଲା— ସତରେ ମୁଁ ଆଜ ଖୁବ୍ କ୍ଲାନ୍ତ । ମୋ ଦେହ ଓ ହାତରେ ପ୍ରଚଣ୍ଡ ବ୍ୟଥା । ଆଜ ସକାଳୁ ସତରେ କିଛି ଖିଆ ହୋଇ ନାହିଁ ।

ବିସ୍ମିତ ନୟନରେ ରମେଶର ମୁଖ ଆଡ଼କୁ ଅନାଇ କୁମୁଦ ପଗ୍ଚରିଲା— ଏଁ, ଖାଇ ନାହାନ୍ତି ! କାହିଁକି ?

ସେମିତି କିଛି ନୁହେ । ମଙ୍ଗଳବାର ଦିନ ମୁଁ ଓ ଭାଉଜ ବ୍ରତ କରୁ, ସେଥି ପାଇଁ ଆଜ ଖିଆ ପିଆ ହୋଇ ନାହିଁ ।

ତା ପରେ ଡାକ୍ତର ରମେଶ ସେଠାରୁ ଚାଲି ଆସିଲା । କୁମୁଦ ନିଜ କକ୍ଷରେ ବସି ବହୁତ ବେଳ ଯାଏ ରମେଶର କଥା ଭାବିବାକୁ ଲାଗିଲା । ସେ ରମେଶର କଥା ବିଶ୍ୱାସ କରି ପାରିଲା ନାହିଁ । ରମେଶ ନିଶ୍ଚୟ ଅସଲ କଥାଟା ତାହା ଠାରୁ ଲୁଚାଇ ରଖିଲା ।

୩

ସନ୍ଧ୍ୟା ବେଳେ ରମେଶ ଘରକୁ ଫେରିଲା । କିଛି କ୍ଷଣ ଚୁପ ରହି ବିମଳ ବାବୁ କହିଲେ— ରମେଶ ! ତୁ ଆଜ ସକାଳେ ଜଳଖିଆ ନ ଖାଇ ଡାକ୍ତରଖାନାକୁ ଚାଲିଗଲୁ, ଦି ପହରେ ବି ଭାତ ଖାଇବାକୁ ଆସିଲୁ ନାହିଁ । କାରଣ କଅଣ ?

ଭାଇ ଓ ଭାଉଜଙ୍କ ମୁହଁକୁ ଗମ୍ଭୀର ଭାବରେ ଅନାଇ ରମେଶ କହିଲା— ଭାଉଜ ! ସତ କରି କୁହ ତ, ତୁମେ କଅଣ ଆଜ ତୁମ ରମେଶକୁ ଖାଇବାକୁ ଦେବାକୁ ଚାହୁଁଛ ?

"ମୁହୂର୍ତ୍ତେ ଆଗରୁ ଯେଉଁ ବିମଳ ବାବୁ ରମେଶ ଅଖିଆ ଥିବାରୁ ଦୁଃଖରେ ସ୍ତ୍ରୀ ସହିତ ତାହା ପାଖରେ ଆସି ଠିଆ ହୋଇଥିଲେ,

ସେ ରମେଶର ଏହି ଗୋଟିଏ ପ୍ରଶ୍ନରେ ସବୁ ଠାରୁ ବେଶି ବିସ୍ମିତ ହେଲେ । କମଳା ପ୍ରତି ରମେଶର ଅବୈଧ ଆକର୍ଷଣ ସତେ ଯେମିତି ଏହି କଥା କେତେ ପଦ ଭିତରେ ତାହାଙ୍କ ନିକଟରେ ସ୍ପଷ୍ଟ ହେଲା । ତାଙ୍କର ରକ୍ତ ଗରମ ହୋଇ ଗଲା । ସେ କଠୋର କଣ୍ଠରେ କହିଲେ— ରମେଶ ! ତୋର ଯେ ଏତେ ଅଧୋପତନ ହେବ, ତାହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଏହି ମୁହୂର୍ତ୍ତରେ ତୁ ଏ ଘରୁ ବାହାରି ଯାଆ !

ଭାଇର ଏତାଦୃଶ ଭାବାନ୍ତରରେ ରମେଶ ହତ ବୁଦ୍ଧି ହୋଇ ଗଲା । ସକାଳେ ଜଳଖିଆ ନ ଖାଇବା ଏବଂ ଦ୍ୱିପହରେ ଭାତ ଖାଇବାକୁ ନ ଆସିବା, ଏ ସବୁ ତ ଅବୋଧ ଶିଶୁ ପକ୍ଷରେ ମାଆର ହାତରୁ ଖାଇବାର ତାଗିର ନାମାନ୍ତର ମାତ୍ର ।

କିଛି କ୍ଷଣ ପରେ ଭାଉଜ ଆଡ଼କୁ ଅନାଇ ରମେଶ ରୁଦ୍ଧ କଣ୍ଠରେ କହିଲା— ଭାଉଜ ! ତୁମ ରମେଶ ଆଜି ଚାଲିଲା ! ଅପରାଧ କ୍ଷମା କରିବ ।

କମଳା ଦେବୀ ଏହି ଆକସ୍ମିକ ଆଘାତ ସହି ପାରିଲେ ନାହିଁ । ସଙ୍ଗେ ସଙ୍ଗେ ସେ ଅଚେତ ହୋଇ ତଳେ ପଡ଼ି ଗଲେ । ବିମଳ ବାବୁ ତାଙ୍କର ସେବା ଶୁଶ୍ରୂଷାରେ ବ୍ୟସ୍ତ ରହିଲେ । ତାହାଙ୍କୁ ଟିକଏ ଭଲ କରିବା ପାଇଁ ରମେଶର ସାହସ କୁଲାଇଲା ନାହିଁ । ସେ ଆସ୍ତେ ଆସ୍ତେ ଘରୁ ବାହାରି ଗଲା ।

## ୪

ରମେଶ ମଥାରେ ନାନା ରକମ ଚିନ୍ତା ପୂରାଇ ଏଣେ ତେଣେ ଘୂରି ବୁଲିଲା । ଏହିପରି ଅନ୍ୟମନସ୍କ ଭାବରେ ବୁଲୁ ବୁଲୁ ସେ ଷ୍ଟେସନ

ମାଇଲ ଦୂରବର୍ତ୍ତୀ ନଦୀ କୂଳରେ ଯାଇ ପହଞ୍ଚିଲା । ସେଠାରେ ସେ ରାତି ସାରା ବସି ରହିଲା । ଖାଲି ଭାବିବାକୁ ଲାଗିଲା । ତାହାର ପେଟରେ ଟୋପାଏ ପାଣି ସୁଦ୍ଧା ପଡ଼ି ନ ଥିଲା ।

ରାତି ପାହିଲା । ସକାଳ ହେଲା । ଗଉଡ଼ମାନେ ଗୋରୁ ପଲ ଧରି ବାହାରିଲେ । ଚାଷୀମାନେ ଲଙ୍ଗଳ କାନ୍ଧେଇ ବଳଦ ନେଇ ବିଲରେ ହଳ କରିବା ପାଇଁ ଚାଲିଲେ । କର୍ମ ବ୍ୟସ୍ତ ପୃଥିବୀ ଆଡ଼କୁ ଚାହିଁବାରୁ ରମେଶର ସବୁ ଚିନ୍ତା କୁଆଡ଼େ ଉଭେଇ ଗଲା । ନିଜର ପେଶା କଥା ତାହାର ମନେ ପଡ଼ିଲା । ତହୁଁ ସେ ଧୀରେ ଧୀରେ ତାହାର ଡାକ୍ତରଖାନା ଆଡ଼କୁ ଅଗ୍ରସର ହେଲା । ସେତେ ବେଳକୁ ଗାଁରେ ଲୋକେ ଯେଝେ ଯେଝାର କାମରେ ଲାଗି ଗଲେଣି । ତାହାର ଡାକ୍ତରଖାନା ବନ୍ଦ ହୋଇଥିଲା । କମ୍ପାଉଣ୍ଡର ସାମନାରେ ପଦ-ଚାରଣ କରୁଥିଲା । ରମେଶ ତାହାକୁ ଦେଖି ପାଚିରି କହିଲା— ତୁମେ ଯାଇ ଘରୁ ଚାବିକାଠି ଆଣି ଡାକ୍ତରଖାନା ଖୋଲ । ଇତି ମଧ୍ୟରେ ମୁଁ ଟିକିଏ ଦେଖି ଆସେଁ, ହରିହର ପ୍ରସାଦ ବାବୁଙ୍କର ଅବସ୍ଥା କଅଣ ହେଲା ।

ଶେଠଜୀଙ୍କର ଘର ପାଖରେ ପହଞ୍ଚି ରମେଶ ଦେଖିଲା, କୁମୁଦ ଦୁଆର ମୁହଁରେ ତାହାକୁ ଅପେକ୍ଷା କରି ଠିଆ ହୋଇଛି । କୁମୁଦକୁ ଦୂରରୁ ଦେଖି ତାହାର ମନରେ ଛନକା ପଶିଲା, ଶେଠଜୀର ଅବସ୍ଥା ଆହୁରି ଖରାପ ହେଲା କି ! କିନ୍ତୁ ପରେ ଜଣା ଗଲା, ତାହାର ଅବସ୍ଥା ସେମିତି କିଛି ଖରାପ ହୋଇ ନ ଥିଲା, ଆଗ ତୁଳନାରେ ସେ ବରଂ ଟିକିଏ ଭଲ ଥିଲା । ତାହାର ଚେତା ଫେରିଥିଲା ଏବଂ ଶ୍ୱାସ ପ୍ରଶ୍ୱାସର ଅବସ୍ଥାରେ ଉନ୍ନତି ଘଟିଥିଲା ।

ରମେଶ କୁମୁଦ ପାଖକୁ ଆଗେଇ ଯାଇ ପଚାରିଲା— କୁମୁଦ ! ଦୁଆରା ମୁହଁରେ ଏତେ ସକାଳୁ ଠିଆ ହୋଇଛ କାହିଁକି ? ତୁମ ବାବାଙ୍କର ଅବସ୍ଥା ଭଲ ତ ?

କୁମୁଦ ମୃଦୁ ସ୍ୱରରେ ଜବାବ ଦେଲା—ହଁ, ବାବାଙ୍କର ଅବସ୍ଥା ଭଲ ଅଛି । କିନ୍ତୁ ଆପଣଙ୍କର ଏ କି ହାଲ ?

ତା ପରେ ଦୃଷ୍ଟି ଓ ଗଳାର ସ୍ୱର ନୁଆଁଇ ସେ କହିଲା—ଡାକ୍ତର ବାବୁ ! କାଲି ରାତି ସାରା ମୁଁ ଆଖି କଷା କରି ନାହିଁ ।

ରମେଶ ପଚାରିଲା— ଏଁ, ଶୋଇ ନାହଁ ! କାହିଁକି ? ରାତିରେ ତୁମ ବାବାଙ୍କର ଅବସ୍ଥା ବେଶି ଖରାପ ହୋଇଲା ନା କଅଣ ?

କୁମୁଦ ସରଳ ଭାବରେ ଜବାବ ଦେଲା— ନା, ବାବାଙ୍କ ପାଇଁ କିଛି ନୁହେଁ, ସେ ପ୍ରାୟ ଭଲ ଅଛନ୍ତି । କିନ୍ତୁ କାଲି ଗଲା ବେଳେ ଆପଣ ମୋତେ ଗୋଟାଏ ଦୁରୂହ ସମସ୍ୟା ଭିତରେ ପକାଇ ଦେଲେ । ମୁଁ ଯେତେ ଚେଷ୍ଟା କଲେ ବି, ଆପଣଙ୍କର ଓ ଆପଣଙ୍କ ଭାଉଜଙ୍କର ଘଟଣା ସମ୍ବନ୍ଧରେ କିଛି ବୁଝି ପାରିଲି ନାହିଁ । ଆପଣଙ୍କୁ ଗୋଟାଏ କଥା ପଚାରିବି, କହିବେ ତ ? ମୋ ପାଖରେ ଲୁଚାଇବେ ନାହିଁ ତ ?

ରମେଶ କହିଲା— କୁମୁଦ ! ତୁମ ଠାରୁ ଲୁଚାଇ ରଖିଲା ଭଳି ଗୁପ୍ତ କଥା କଅଣ ମୋର କିଛି ଅଛି ? ତୁମେ କଅଣ ପଚାରିବାକୁ ଚାହଁ, ପଚାର ।

କୁମୁଦ ପଚାରିଲା— କାଲି ଭାଉଜଙ୍କ ସାଙ୍ଗରେ ଆପଣଙ୍କର କିଛି ରକମ ରଗାରଗି ହୋଇଥିଲା କି ?

ରମେଶ ଜବାବ ଦେଲା—ନା ।

ତାହା ହେଲେ ଆପଣ ଖାଇ ନ ଥିଲେ କାହିଁକି ?

ମୁଁ ଖାଇ ନାହିଁ ! ଏ କି କଥା, କହୁଛ ତୁମେ, କୁମୁଦ ! କାଲି ଭାଉଜ ନିଜେ ମୋତେ ଖାଇବାକୁ ଦେଇ ନ ଥିଲେ !

ଭାଉଜ ଦେଇ ନ ଥିଲେ ! କମଳା ଦେବୀ ଖାଇବାକୁ ଦେଇ ନାହାନ୍ତି ! ମୁଁ ତ ଏ କଥା ବିଶ୍ୱାସ କରି ପାରୁ ନାହିଁ । ଯେଉଁ

ଭଉଜ ଆପଣଙ୍କୁ ନିଜର ଆଖି ପରି ମନେ କରନ୍ତି, ସେ ଆପଣଙ୍କୁ ଖାଇବାକୁ ଦେଇ ନାହାନ୍ତି, ତାହା କଅଣ କେବେ ସମ୍ଭବ ହୋଇ ପାରେ ?

ମୁଁ ବ ଡ ବୁଝି ପାରୁ ନାହିଁ, କୁମୁଦ ଅସଲ କଥା କଅଣ । ଯେଉଁ ଭଉଜ ମୋତେ ନିଜର ପୁଅ ଭଳି ମନେ କରନ୍ତି, ସେ ମୋତେ ଖାଇବାକୁ ଦେଲେ ନାହିଁ, ଆଉ ଯେଉଁ ଭାଇ ମୋତେ ନିଜର ପୁଅ ପରି ସ୍ନେହ କରନ୍ତି ସେ ମୋତେ ଶୀତ ରାତିରେ ଘରୁ ବାହାର କରିଦେଲେ।

ଏଁ, ଘରୁ ବାହାର କରି ଦେଇଛନ୍ତି ! ଆପଣଙ୍କର ଭାଇ ! — କୁମୁଦର କଣ୍ଠରେ ଆଶଙ୍କାର ସ୍ୱର । ସେ ବିସ୍ମୟ ବିସ୍ଫାରିତ ନେତ୍ରରେ ରମେଶର ମୁହଁକୁ ଚାହିଁ ପଚାରିଲା— ତାହା ହେଲେ ଆପଣ କାଲି ରାତିରେ କେଉଁଠି ଥିଲେ ?

ରମେଶ ଜବାବ ଦେଲା— ଏମିତି ଆନମନା ହୋଇ ବୁଲୁଁ ବୁଲୁଁ ନଦୀ କୂଳରେ ଯାଇ ପହଞ୍ଚିଲି । ଶୀତ କାକରରେ ଖୋଲା ଜାଗାରେ ବସି ରାତି ସାରା ଆକାଶର ତାରା ଗଣିଛି ଏବଂ କେତେ ରକମ କଥା ଭାବିଛି । ମାନ ଭାବ ଭାବ କିଛି ଥଳ କୂଳ ପାଇଲି ନାହିଁ । ଖାଲି ଭାଇଙ୍କର ଲାଲ ଆଖି ଦୁଇଟି ବାରମ୍ବାର ମୋ ସାମନାରେ ଭାସିବାକୁ ଲାଗିଲା ।

କୁମୁଦ ଆସ୍ତେ ଆସ୍ତେ କହିଲା— ତାହା ହେଲେ ଆପଣ କାଲି ଖାଇ ନାହାନ୍ତି । ଏତେବେଳେ ମୋତେ କହିଲେ କଅଣ ନା ବ୍ରତ କରିଛନ୍ତି । ବୋଧ ହୁଏ ଏଯାଏ ଆପଣଙ୍କ ବ୍ରତ ଶେଷ ହୋଇ ନାହିଁ । କିନ୍ତୁ ଆଜ ମୁଁ ଆପଣଙ୍କର କିଛି କଥା ଶୁଣିବି ନାହିଁ ।

କୁମୁଦର କଥାରେ ରମେଶର ଆଖି ଲୁହରେ ଛଳ ଛଳ ହେଲା । ସେ କରୁଣ କଣ୍ଠରେ ଅନୁରୋଧ କଲା— କୁମୁଦ !

ମୋତେ ଏକ୍ଷଣି କିଛି ଖାଇବାକୁ କୁହ ନାହିଁ । ଯେତ କହୁଛ, ମୁଁ କିଛି ଖାଇ ପାରିବି ନାହିଁ । ତୁମେ ବରଂ ଗୋଟାଏ କାମ କର । ଆମ ଘରକୁ ଯାଇ ଦେଖି ଆସ, ରଜନ କିପରି ଅଛନ୍ତି ଏବଂ ସେ କିଛି ଖାଇଛନ୍ତି କି ନା । ଯଦି ସେ ଖାଇଥିବେ, ତାହା ହେଲେ ମୁଁ ବି ଖାଇବି ।

ଏହା ଶୁଣି କୁମୁଦ ଉଠି ପଡ଼ି ଛିଡ଼ା ହେଲା ! ତା ପରେ ଆଉ କିଛି କଥା ନ କହି ସେ କମଳା ଦେବୀଙ୍କର ହାଲଚାଲ ବୁଝିବାକୁ ଚାଲିଗଲା ।



କୁମୁଦକୁ ତାଙ୍କର ଘର ଆଡକୁ ଆସିବାର ଦେଖି କମଳା ଦେବୀ ତତ୍‌କ୍ଷଣାତ୍ ଦାଣ୍ଡ ଦୁଆର ପର୍ଯ୍ୟନ୍ତ ଆଗେଇ ଯାଇ ସସ୍ନେହରେ ତାହାକୁ କହିଲେ— କୁମୁଦ ! ତୁମେ ଚିରଦିନ ବଞ୍ଚିବ । ମୁଁ ତ ଭାବୁଥିଲି, ତୁମେ ନିଶ୍ଚୟ ରମେଶର ଖବର କିଛି ନା କିଛି ଜାଣିଥିବ ।

କମଳା ଦେବୀ ଆକୁଳ ଭାବରେ କହି ଚାଲିଲେ— କୁମୁଦ ! ତୁମେ ଶୁଣିଛ ଗୋଟାଏ କଥା ? ରମେଶ କାଲି ସକାଳୁ ଏଠାରେ କିଛି ଖାଇ ନାହିଁ । ଅଖିଆ ଥାଇ ସେ କାଲି ରାତିରେ ଏଠାରୁ ଚାଲି ଯାଇଛି । ସେ ତୁମ ଘରକୁ ଯାଇ ନାହିଁ ତ ?

କମଳା ଦେବୀଙ୍କ କଥା ଶୁଣି ଟିକିଏ ହସି ଦେଇ କୁମୁଦ କହିଲା— ନା, କାଲି ରାତିରେ ସେ ଆମ ଘରକୁ ଯାଇ ନ ଥିଲେ ।

ଯିବେ ବା କାହାଁକ ? ଆମ ଘରଟା ତ ଆଉ ହୋଟେଲ କି ଧର୍ମଶାଳା ନୁହେଁ । ତାହା ଛଡ଼ା ଯେଉଁ ଲୋକକୁ ତାହାର ଘର ଓ ଘରଣୀ ଘରୁ ତଡ଼ି ଦେଇଛନ୍ତି, ତାହାଙ୍କୁ କିଏ ବା କାହିଁକି ଆଶ୍ରୟ ଦେବ ?

ତା ପରେ କୁମୁଦ ଆସ୍ତେ ଆସ୍ତେ ପଚାରିଲା — ଭଉଜ, ସତ କହ କୁହ ତ, ରମେଶ ଏଠାରୁ ଚାଲିଯିବା ପରେ ତୁମେ ଖାଇଛ କି ନା ।

ଘରକୁ ଫେରି ଯାଇ କୁମୁଦ ଡାକ୍ତର ରମେଶଙ୍କୁ ଜଣାଇଲା— ରମେଶ ବାବୁ ! ଆପଣଙ୍କର ଭଉଜ ଖାଇଛନ୍ତି । ଏବେ ଆପଣଙ୍କର କିଛି ଖିଆ ପିଆ କରିବା ଦରକାର ।

କୁମୁଦର କଥାରେ ରମେଶର ବିସ୍ମୟର ସୀମା ରହିଲା ନାହିଁ । ସେ ଏମିତି ଗୋଟାଏ ଖବର ମୋଟେ ଆଶା କରି ନ ଥିଲା । ସେ ନିଜର କାନକୁ ମୁଦ୍ଧା ବିଶ୍ୱାସ କରି ପାରିଲା ନାହିଁ । କେଉଁ ମାଆ କଅଣ ତାହାର ପୁଅକୁ ନ ଖୁଆଇ ନିଜେ ଖାଇ ପାରେ ? ରମେଶର ତୁଣ୍ଡରୁ ଆପେ ଆପେ ବାହାରିଗଲା— ନା, କୁମୁଦ ! ମୋତେ ନ ଖୁଆଇ ଭଉଜ କଦାପି ନିଜେ ଖାଇ ପାରିବେ ନାହିଁ । ଏହା କୌଣସି ମତେ ସମ୍ଭବ ନୁହେଁ ।

କିନ୍ତୁ କୁମୁଦ ଜୋର ଦେଇ କହିଲା— ତାହା ହେଲେ ଆପଣ ମୋ କଥାକୁ ଭଉଜଙ୍କର ଆଦେଶ ବୋଲି ମନେ କରନ୍ତୁ । ଆପଣ ତ ନିଶ୍ଚୟ ଜାଣନ୍ତି ଯେ କୁମୁଦ ଆପଣଙ୍କ ନିକଟରେ କଦାପି ମିଛ କହି ପାରିବ ନାହିଁ । ଅସଲ କଥା ହେଉଛି, ଯଦି ଆପଣ ଭଉଜଙ୍କୁ ବଞ୍ଚାଇ ରଖିବାକୁ ଚାହାନ୍ତି ତାହା ହେଲେ ଆପଣଙ୍କୁ ନିଶ୍ଚୟ କିଛି ଖାଇବାକୁ ହେବ ।

୭

ସାମାନ୍ୟ କିଛି ଜଳଖିଆ ଖାଇ ରମେଶ ତାହାର ଡାକ୍ତରଖାନାକୁ ଚାଲିଗଲା । ଇତି ମଧ୍ୟରେ ସେଠାରେ ରୋଗୀମାନଙ୍କର ଭିଡ଼ ଜମି ଯାଇଥିଲା । ଆଜି ତାହାର ଡାକ୍ତରଖାନାକୁ ଆସିବାରେ ଟିକିଏ ଡେରି ହେଲା ।

ରୋଗୀମାନଙ୍କର ଭିଡ଼ ଭିତରେ କେତେବେଳେ ଗୋଟାଏ ବାଜି ଚାଲିଣି, ରମେଶର ତାହା ଖିଆଲ ନ ଥିଲା । ସେ ଶେଷ ରୋଗୀ ଜଣକୁ ଦେଖୁଛି, ଏତିକି ବେଳେ କୁମୁଦ ଆସି ସେଠାରେ ହାଜର ହେଲା ।

କୁମୁଦକୁ ଦେଖି ରମେଶ ଟିକିଏ ସ୍ୱସ୍ତି ବୋଧ କଲା । ସେ ଖୁବ୍ କ୍ଲାନ୍ତ ହୋଇ ପଡ଼ିଥିଲା । ସେ କୁମୁଦକୁ କହିଲା— ତୁମେ ଆସିଲ, କୁମୁଦ । ଭାରି ଭଲ ହେଲା ! ମୁଁ ଖୁବ୍ କ୍ଲାନ୍ତ ହୋଇ ପଡ଼ିଛି ।

କୁମୁଦ ହସି ହସି କହିଲା— ହଁ, ହୁଏତ ମୁଁ ଏଠାକୁ ଆସି ଆପଣଙ୍କର ଭଲ କଲି । କିନ୍ତୁ ଆପଣ ଯେତେବେଳ ଯାଏ ନିଜେ ନିଜର ଭଲ ନ କରିଛନ୍ତି, ସେତେବେଳ ଯାଏ କିଛି ଭଲ ହେବାର ନୁହେ । ଏତେ ଖଟିବା କଅଣ ଭଲ ? ଯେତିକି ଦେହରେ ସିବ, ତାହା ଠାରୁ ଅଧିକା ପରିଶ୍ରମ କରିବା ଆଦୌ ଉଚିତ ନୁହେଁ ।

କୁମୁଦର ଏମିତିକା ମୁରବିଆଳି କଥାରେ ରମେଶ ନ ହସି ରହି ପାରିଲା ନାହିଁ । ଚଉକିରୁ ଉଠୁଁ ଉଠୁଁ ସେ କହିଲା— ହେଉ, ତୁମ କଥା ମାନି ମୁଁ ଏକ୍ଷଣି କାମ ବନ୍ଦ କଲି । ହେଲା ତ ? ମାନ ଆଉ

କାହ୍ନି ରୋଗୀ ଥିଲେ ସମସ୍ତଙ୍କ ସନ୍ଧ୍ୟା ପର୍ଯ୍ୟନ୍ତ କୌଣସି ମତେ କଟି ଯାଇ ଥାଆନ୍ତା । ଯାହା ହେଉ କପାଳ ଦୋଷରୁ ଏଠାରେ ଆଉ ଜଣେ ହେଲେ ରୋଗୀ ନାହାନ୍ତି ।

ଡାକ୍ତରର କଥା ଶୁଣି କୁମୁଦ ସହାସ୍ୟରେ କହିଲା— ବାଃ, କିଏ କହିଲା ଆଉ ରୋଗୀ ନାହାନ୍ତି ?

କାହିଁ ? — ରମେଶ ପଚାରିଲା ।

କୁମୁଦ ରମେଶ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲା— ବର୍ତ୍ତମାନ ଆପଣଙ୍କ ଠାରୁ ବଡ଼ ରୋଗୀ ତ ମୋ ନଜରରେ ପଡ଼ୁ ନାହିଁ । ସେହିଦିନ ଆପଣ ଯେଉଁ ପରିମାଣରେ ସୁସ୍ଥ ଥିଲେ, ଆଜି କଅଣ ଆପଣ ନିଜକୁ ସେତେ ସୁସ୍ଥ ମନେ କରୁଛନ୍ତି ?

କୁମୁଦ ଅସଲ କଥାଟି କହି ଦେଲା । ରମେଶ ତାହା ମର୍ମେ ମର୍ମେ ଅନୁଭବ କଲା । ସତରେ ସେ ତ ଆଜି ମୋଟେ ସୁସ୍ଥ ନୁହେଁ ।

ଡାକ୍ତରଖାନା ବନ୍ଦ କରି ରମେଶ କମ୍ପାଉଣ୍ଡରର ହାତରେ ଗୃହଚାବି ଭଜନ ପାଖକୁ ପଠାଇ ଦେଲା । ସେ କୁମୁଦ ସାଙ୍ଗରେ ବାହାରକୁ ଆସି ପଚାରିଲା— ହଁ, ଏକ୍ଷଣି ମୋତେ କେଉଁଠାକୁ ଯିବାକୁ ହେବ ?

କୁମୁଦ ସଙ୍ଗେ ସଙ୍ଗେ ଜବାବ ଦେଲା— ନିଜ ଘରକୁ ।

ନିଜ ଘର ?— ରମେଶ ଶଙ୍କିତ ଗଳାରେ ପଚାରିଲା ।

କୁମୁଦ ବୁଝାଇଲା— ହଁ, ଡାକ୍ତର ବାବୁ, ନିଜ ଘରକୁ ! ସଂସାରରେ ପ୍ରତ୍ୟେକ ମଣିଷକୁ ନିଜର ଘର ତିଆରି କରିବାକୁ ପଡ଼େ । ପକ୍ଷୀମାନେ ତ ଅନ୍ୟର ବସାରେ ରହି ଦିନ କାଟନ୍ତି ନାହିଁ ।

ରମେଶ ପଚାରିଲା— ତାହା ହେଲେ ସେହି ଘର ମୋତେ କିପରି ଭାବରେ ତିଆରି କରିବାକୁ ହେବ ?

କୁମୁଦ ହସ ହସ ବଦନରେ ଧୀର କଣ୍ଠରେ କହିଲା— ଦୂନିଆରେ ଯେମିତି ସଭିଏଁ ତିଆରି କରନ୍ତି; ଆପଣଙ୍କୁ ଠିକ୍ ସେମିତି ଗୋଟାଏ ବସା ତିଆରି କରିବାକୁ ହେବ । ବସା ବାନ୍ଧିବାକୁ ଗଲେ ପ୍ରଥମେ ଗୋଟାଏ ଘର ଦରକାର । ତା ପରେ ଦରକାର ବଞ୍ଚି ରହିବା ପାଇଁ ନାନା ଉପକରଣ । ଏସବୁ ଯୋଗାଡ଼ ସରିଲେ, ବସବାସ ଆରମ୍ଭ କରିବାକୁ ହେବ । ଯଦି ସେଥିରେ ମନ ନ ଭରେ, ତାହା ହେଲେ ଜଣେ ସାଥୀ ଖୋଜି ଆଣିବାକୁ ହେବ, ଯେଉଁଥିରେ ଶୂନ୍ୟତାର ହାତରୁ ରକ୍ଷା ମିଳିବ । ସାଥୀର ଆଗମନ ପରେ ବସାରେ ଦୁଇଟି ପ୍ରାଣୀ ଏକ ହୁଅନ୍ତି । ତା ପରେ ସେମାନଙ୍କର ପିଲାଛୁଆ ହେଲେ ଘରଦ୍ୱାର କର୍ମ ଉଠେ । ବାସ୍, ଏମିତି ଭାବରେ ଘରଟା ବସା ହୋଇ ଯାଏ । ପୁଅ, ଝିଅ, ମାଆ ଓ ବାପର ଆମୋଦ ଆହ୍ଲାଦରେ ବସା ସର୍ବଦା ମୁଖରିତ ହୁଏ ।

ରମେଶ କହିଲା — କିନ୍ତୁ ବସା ତିଆରି କରିବା ତ ଏଡ଼େ ସହଜ କଥା ନୁହେଁ, କୁମୁଦ । ସବା ଆଗେ ଦରକାର ଗୋଟାଏ ଘର, ତା ପରେ ତାହାକୁ ବାସୋପଯୋଗୀ କରିବା ଏବଂ ଜଣେ ସାଥୀ ଖୋଜି ଆଣିବା— ଏସବୁ କଅଣ ଏଡ଼େ ସହଜ କଥା ଯେ ଆଖି ପିଛୁଳାକେ ହୋଇଯିବ ? ଯେଉଁ ଲୋକଟି ଖାଲି ରୋଗୀମାନଙ୍କ ସମ୍ବନ୍ଧରେ ବରାବର ମୁଣ୍ଡ ଖେଳାଇବାରେ ଅଭ୍ୟସ୍ତ, ତାହା ଦ୍ୱାରା ଘର ବାନ୍ଧିବା କଅଣ କେବେ ସମ୍ଭବ ହେବ ? ଘର ବାନ୍ଧିବା ଅବଶ୍ୟ ଖୁବ୍ କଠିନ କାମ ।

ଏହା ଶୁଣି କୁମୁଦ ହସି ହସି କହିଲା — ଡାକ୍ତର ବାବୁ, ଏ ବିଷୟରେ ଆପଣଙ୍କୁ କିଛି ଚିନ୍ତା କରିବାକୁ ପଡ଼ିବ ନାହିଁ । ମୁଁ ଆପଣଙ୍କୁ ସବୁ ମତେ ସାହାଯ୍ୟ କରିବି । ବସା ତ ଆଉ ଆକାଶରୁ ଖସେ ନାହିଁ, ନିଜେ ମଣିଷକୁ ତାହା ଗଢ଼ିବାକୁ ହୁଏ । ଆପଣ ଜଣେ

ସୁସ୍ଥ ସବଳ ମଣିଷ । ସୁତରାଂ ଆପଣଙ୍କ ଦ୍ୱାରା ଘର ବନ୍ଧା ବା ସମ୍ଭବ ହେବ ନାହିଁ କାହିଁକି ?

ରମେଶ ଓ କୁମୁଦ ଦୁହେଁ ଗୋଟାଏ ରିକ୍‌ସାରେ ଚଢ଼ି ସେଠ ହରିହର ପ୍ରସାଦର ଘରେ ଆସି ପହଞ୍ଚିଲେ । କୁମୁଦ ଆଗରୁ ରମେଶର ଭୋଜନର ବ୍ୟବସ୍ଥା କରିଥିଲା । ଘରେ ପହଞ୍ଚିଲା କ୍ଷଣି ସେ ରମେଶକୁ କହିଲା— ଆପଣ ଶୀଘ୍ର ଖିଆ ପିଆ ସାରନ୍ତୁ । ମୁଁ ଆପଣଙ୍କୁ ଗୋଟାଏ ବସା ଦେଖାଇ ଦେବି । ବୁଝି ସୁଝି ସବୁ କାମ କରନ୍ତୁ । ବୋକାମୀ କଲେ ଚଳିବ ନାହିଁ । ଦିନେ ନା ଦିନେ ନିଶ୍ଚୟ ଏମିତି ସମୟ ଆସିବ, ଯେତେ ବେଳେ ଆପଣଙ୍କ ଭାଇ ନିଜର ଭୁଲ ବୁଝି ପାରିବେ ।

ଭୋଜନ ପରେ ସେମାନେ ବସା ଦେଖିବାକୁ ବାହାରିଲେ । ସେଠ ଅତି ନିକଟରେ ଘରଟି ତିଆରି କରିଥିଲା । ଖୁବ୍ ସୁନ୍ଦର ଘର । ରମେଶ ପଚାରିଲା— ଏଟା କାହାର ଘର, କୁମୁଦ ?

କୁମୁଦ ଜବାବ ଦେଲା— ଭଡ଼ା ନେଲେ ଏଟା ଆପଣଙ୍କର ବି ହୋଇ ପାରେ । ଘର ମନକୁ ପାଇଲା ତ ?

ଘରଟି ରମେଶକୁ ଭାରି ଭଲ ଲାଗିଲା । ଗୋଟେ କୋଠାଟିଏ, ଖୋଲା ହାଉଆ, ଗୋଟେ ବଖରା, ଗୋଟିଏ ବୈଠକଖାନା, ଘରକୁ ଲାଗି ଗୋଟେ ବଗିଚାଟିଏ ।

ରମେଶ ପ୍ରଫୁଲ୍ଲ ଚିତ୍ତରେ କୁମୁଦକୁ କହିଲା— ଘରଟି ମୋର ଖୁବ୍ ପସନ୍ଦ ହେଲା । କିନ୍ତୁ ମୋର ପସନ୍ଦ ନାପସନ୍ଦ କଥା ତୁମେ ଏମିତି ଠିକ୍ ଭାବରେ କପରି ଜାଣିପାରିଲ ?

ରମେଶର କଥା ଶୁଣି ଖୁସି ହୋଇ କୁମୁଦ କହିଲା— ତାହା ହେଲେ ଘରଟା ଆପଣଙ୍କର ପସନ୍ଦ ହେଲା । ଏବେ ଘରବାଲା ସଙ୍ଗରେ ଭଡ଼ା ସମ୍ବନ୍ଧରେ କଥାଟା ପକ୍କା କରିବ ତ ?

୭

ରମେଶଙ୍କୁ ଘରୁ ବାହାର କରିଦେଇ ବିମଳ ବାବୁ ଟିକିଏ ଶାନ୍ତି ପାଇଲେ । ରମେଶ ବାହାରି ଗଲା ବେଳେ କମଳା ଦେବୀଙ୍କର ଯେଉଁ ଶୋଚନୀୟ ଅବସ୍ଥା ହେଲା, ସେଥିରେ ତାଙ୍କର ସନ୍ଦେହ ଅଧିକ ଦୃଢ଼ ହେଲା । ଦଶ ପନ୍ଦର ମିନିଟ ପରେ କମଳା ଦେବୀଙ୍କର ଚେତା ଫେରିଲାରୁ, ସେ ସଙ୍ଗେ ସଙ୍ଗେ ସ୍ୱାମୀଙ୍କୁ କହି ପକାଇଲେ—ତୁମେ ଏକ୍ଷଣି ଯାଇ ରମେଶଙ୍କୁ ଫେରାଇ ଆଣ । ତାହାଙ୍କୁ ନ ଦେଖିଲେ ମୁଁ ଜୀବନ ଧରି ରହି ପାରିବି ନାହିଁ । ମୁଁ ତାହାଙ୍କୁ ଖୁବ୍ ଶ୍ରଦ୍ଧା କରେ । ତାହାଙ୍କୁ ମୋର ଆଖି-ଛପା କର ନାହିଁ ।

ଏହା ଶୁଣି ବିମଳ ବାବୁ ମନେ ମନେ ସନ୍ଦେହ କଲେ, ରମେଶ ପ୍ରତି ସ୍ତ୍ରୀର ଏମିତିକା କଥା ସବୁ ଅବୈଧ ପ୍ରେମର ସୂଚନା ନୁହେଁ କି ? ସେ ସ୍ତୁମ୍ଭିତ ପଥର କରି ସ୍ତ୍ରୀର କଥା ସବୁ ଶୁଣିଲେ ଏବଂ କ୍ରୁଦ୍ଧ ଆବେଗରେ ମନେ ମନେ ଜଳିବାକୁ ଲାଗିଲେ ।

ସେ ଦିନ କମଳା ଦେବୀ ବିଛଣାରେ ପଡ଼ି ରାତି ସାରା ଛଟପଟ ହେଲେ । ତାହାଙ୍କ ପାଖରେ ବସି ତାହାଙ୍କୁ ବୁଝାଇ ସୁଝାଇ ଅନେକ କଥା କହିଲେ ସୁଦ୍ଧା, ବିମଳ ବାବୁ ତାହାଙ୍କୁ ଆଦୌ ଶାନ୍ତ କରି ପାରିଲେ ନାହିଁ ।

ସକାଳେ ଅତ୍ୟନ୍ତ ବିରକ୍ତ ହୋଇ ବିମଳ ବାବୁ ପାଟି କରି କହିଲେ— ଯାଅ, ତାହା ହେଲେ ତୁମେ ବି ଏଠାରୁ ଦୂର ହୋଇ ଯାଅ । ମୋ ଘର ଭିତରେ ଏମିତି ଅନାଚାର ମୁଁ ଆଉ କୌଣସି ମତେ ବରଦାସ୍ତ କରି ପାରିବି ନାହିଁ ।

ସ୍ୱାମୀଙ୍କର ଏପରି କଟୁ କଥା ଶୁଣି କମଳା ଦେବୀ ଖାଲି କାନ୍ଦି କାନ୍ଦି କାନ୍ଦିବାକୁ ଲାଗିଲେ । ସ୍ତ୍ରୀର ସ୍ୱଭାବଗତ କାନ୍ଦଣାରେ ବିମଳ ବାବୁଙ୍କର ମନ ଟିକିଏ ନରମ ପଡ଼ିଗଲା । ସେ ତାହାଙ୍କୁ ସାନ୍ତ୍ୱନା ଦେବା ପାଇଁ କହିଲେ — କମଳା ! କାହିଁକି ତୁମେ ବୃଥାରେ ମୋତେ ରଗାଇ ଦେଲ ! ତୁମେ କଅଣ ଜାଣ ନାହିଁ, ମୁଁ ତୁମକୁ କେତେ ଭଲ ପାଏ ? ତୁମେ ଯେତେ ଭୁଲ କଲେ ବି ମୁଁ ସେସବୁ ମାଫ କରିବାକୁ ରାଜି ଅଛି । କିନ୍ତୁ ତୁମେ ରମେଶକୁ ମନରୁ ପୋଛି ପକାଅ ।

ବିମଳ ବାବୁଙ୍କ କଥାରେ କମଳା ଦେବୀ ରାଗରେ ଜଳି ଗଲେ । ଆଖି ଲାଲ କରି ସେ ଗର୍ଜନ କଲେ—ଦୁଇଟି ନିର୍ଦ୍ଦୋଷ ପ୍ରାଣୀଙ୍କୁ ଏପରି ଭାବରେ ବଦନାମ କରୁଛ, ତୁମକୁ ଟିକିଏ ଲାଜ ମାଡ଼ୁ ନାହିଁ ? ଏହି ବିଷୟରେ ଆଉ ପଦେ ହେଲେ କଥା ମୁଁ ତୁମ ଠାରୁ ଶୁଣିବାକୁ ଚାହେଁ ନା । ରମେଶକୁ ତ ତୁମେ ଘରୁ ବାହାର କରି ଦେଇଛ । ଯଦି ତୁମେ ଚାହୁଁଛ, ମୁଁ ବି ଏ ଘରୁ ଆଜି ବାହାରି ଯାଉଛି । କିନ୍ତୁ ମୁଁ ତୁମକୁ ପଚାରେ, ମୋ ନିଜ ଘରୁ ମୋତେ ବାହାର କରି ଦେବାର ଅଧିକାର ତୁମର ଅଛି କି ?

କମଳା ଦେବୀଙ୍କର କ୍ରୋଧୋନ୍ମତ୍ତ କଣ୍ଠ ସ୍ୱରରେ ବିମଳ ବାବୁ ଭୟଭୀତ ହୋଇ ଗଲେ । ସ୍ତ୍ରୀ ନାରୀର ସାମନାରେ ସେ ବରାବର ଅପ୍ରସ୍ତୁତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଆନ୍ତି ।

କମଳା ଦେବୀଙ୍କୁ ସେହି ଅବସ୍ଥାରେ ଛାଡ଼ି ଦେଇ ବିମଳ ବାବୁ ଅଫିସ ଚାଲି ଗଲେ । ସନ୍ଧ୍ୟା ବେଳେ ସେ ଘରକୁ ଫେରି ଆସିଲେ ଏବଂ ସ୍ତ୍ରୀକୁ ଟିକିଏ ଖୁସି ଥିବାର ଦେଖି ପଚାରିଲେ— କମଳା, ତୁମେ ଖାଇଛ ?

ହଁ— କମଳା ଦେବୀ ଜବାବ ଦେଲେ ।

ବିମଳ ବାବୁ ଆଶ୍ୱସ୍ତ ହେଲେ । ଦେହରୁ କୋଟଟା ଖୋଲି ପକାଇ ହ୍ୟାଙ୍ଗରରେ ଟାଙ୍ଗି ଦେଇ ସେ କହିଲେ — ତୁମର ଆଗରୁ

ଖାଇଦେବା ଉଚିତ ଥିଲା । ରମେଶର ଧୃଷ୍ଟତା ସୀମା ଟପି ଗଲାଣି । ମୁଁ ତ ଆଉ ସହି ପାରିଲି ନାହିଁ ।

ବିମଳ ବାବୁଙ୍କ କଥାକୁ କାନ ନ ଦେଇ କମଳା ଦେବୀ ଘର କାମରେ ଲାଗିଗଲେ ।

## ୮

ସେହି ଦିନ ବିମଳ ବାବୁଙ୍କୁ ସେମାନଙ୍କ ଘର ଆଡ଼େ ଆସିବାର ଦେଖି ପାରି କୁମୁଦ ଦାଣ୍ଡ ଦୁଆରକୁ ଧାଇଁଗଲା ଏବଂ ତାହାଙ୍କୁ ସାଙ୍ଗରେ ନେଇ ଯାଇ ବାପର ଶୟନ କକ୍ଷରେ ଛାଡ଼ିଦେଲା । ଶେଠଙ୍କର ଅବସ୍ଥା ଦେଖି ବିମଳ ବାବୁ ଅତ୍ୟନ୍ତ ଦୁଃଖିତ ହେଲେ । ବିଛଣା ପାଖରେ ଚଉକିଟିରେ ସେ ବସି ପଡ଼ିଲେ ।

ଶେଠ ହରିହର ପ୍ରସାଦ ଅତି କ୍ଷୀଣ ସ୍ୱରରେ କହିଲା— ବିମଳ ବାବୁ, ଆପଣଙ୍କୁ ଅଯଥା କଷ୍ଟ ଦେଲି, ମୋର ଦୋଷ ମାଫ କରିବେ । ନିହାତି ଦରକାର ପଡ଼ିବାରୁ, ଆପଣଙ୍କୁ ଏଠାକୁ ଡ଼କାଇ ଆଣିଲି । କିନ୍ତୁ ବାସ୍ତବିକ ମୋର ଆପଣଙ୍କ ପାଖକୁ ଯିବା ଉଚିତ ଥିଲା । ସତରେ ଆଜ ଆଉ ସେହି କ୍ଷମତା ମୋର ନାହିଁ ।

ତା ପରେ ଶେଠଜୀ ଝିଅକୁ କହିଲା — ମାଆ କୁମୁଦ, ତୁ ଟିକିଏ ବାହାରକୁ ଯାଅ । ଦେଖିବୁ, ଆଉ କେହି ଯେମିତି ଏଠାକୁ ନ ଆସେ । ସେ ଯେ ହେଉ ପଛକେ, ତୁ କାହାକୁ ଏଠାକୁ ଛାଡ଼ିଦେବୁ ନାହିଁ ।

ବାପର ହୁକୁମ ମାନି କୁମୁଦ ସେଠାରୁ ଚାଲିଗଲା ।

ତହୁଁ ଶେଠଜୀ ବିମଳ ବାବୁଙ୍କୁ କହିଲ— ବିମଳ ବାବୁ, ମୁଁ ଅଜ ଗୋଟାଏ ବିଶେଷ କାରଣରୁ ଆପଣଙ୍କୁ ଏଠାକୁ ଡକାଇଛି। ଆପଣଙ୍କ ଭାଇର ହାତରେ କୁମୁଦକୁ ସମର୍ପଣ କରି ଦେବା ପାଇଁ ମୁଁ ବଡ଼ ଆଶା କରୁଛି। ଏଥିରେ ଆପଣ ମୋତେ ନିରାଶ କରିବେ ନାହିଁ, ମୋର ଦୃଢ଼ ବିଶ୍ୱାସ। ଆପଣଙ୍କ ସ୍ତ୍ରୀ କମଳା ଦେବୀ କୁମୁଦକୁ ପସନ୍ଦ କରିଛନ୍ତି, ଆଉ ରମେଶ ମଧ୍ୟ ତାହାକୁ ଭଲ ପାଏ।

ଶେଠ ହରିହର ପ୍ରସାଦର ପ୍ରସ୍ତାବ ଶୁଣି ବିମଳ ବାବୁ ଅବାକାବା ହୋଇ ଗଲେ। ତାହାଙ୍କ ତୁଣ୍ଡରୁ ପଦେ ହେଲେ ପ୍ରସନ୍ନତା ସୂଚକ କଥା ବାହାରିଲା ନାହିଁ। ସେ ଖାଲି ସ୍ୱୀକୃତିପୂର୍ଣ୍ଣ ଦୃଷ୍ଟିରେ ଶେଠଜୀର ମୁହଁକୁ ଚାହିଁ ରହିଲେ।

ରୋଗ ଶଯ୍ୟାରେ ପଡ଼ି ରହି ଶେଠଜୀ କହିଲା— ବିମଳ ବାବୁ, ଆପଣ ଖାଲି ଜବାବ ଦିଅନ୍ତୁ। ଏଥିରେ ଆପଣଙ୍କର ଭାବିବାର କିଛି ନାହିଁ। ଏଣେ ମୋ ହାତରେ ସମୟ ମଧ୍ୟ ନାହିଁ। ବର୍ତ୍ତମାନ ମୋ ପକ୍ଷରେ ପ୍ରତି ମୁହୂର୍ତ୍ତ ମୂଲ୍ୟବାନ। ମୋ ଜୀବନ ଯେ କେତେବେଳେ ଶେଷ ହୋଇଯିବ, ତାହା କିଏ କହି ପାରିବ।

ବିମଳ ବାବୁ ଯେମିତି ସବୁ କଥା ଭୁଲି ଗଲେ। ସେ ଆନନ୍ଦରେ କହିଲେ— ଶେଠଜୀ, ଆପଣଙ୍କ କଥା କିଅଣ ମୁଁ କେବେ ଅମାନ୍ୟ କରି ପାରେ ? କୁମୁଦ ଭଳି ରୂପ ଓ ଗୁଣର ଝିଅକୁ ମୋ ସାନ ଭାଇର ଧର୍ମ ପତ୍ନୀ ଭାବରେ ଆମେ ପାଇବୁ, ଏହା ତ ଆମ ପକ୍ଷରେ ପରମ ସୌଭାଗ୍ୟର କଥା। ମୁଁ ଜାଣେ, କମଳା କୁମୁଦକୁ ନିଜର ଝିଅ ପରି ସ୍ନେହ କରେ।

ତାହା ହେଲେ ଆଉ ବିଳମ୍ବ କରନ୍ତୁ ନାହିଁ, ବିମଳ ବାବୁ। ଶୁଭ କାର୍ଯ୍ୟଟି ବର୍ତ୍ତମାନ ସମ୍ପନ୍ନ ହୋଇଯିବା ଦରକାର। ଏହି

ଶୁଭ କାର୍ଯ୍ୟ ଦେଖିବାକୁ ଅପେକ୍ଷା କରି ମୋ ପ୍ରାଣଟା ବି ବାହାରି ଯାଉ ନାହିଁ ।

ହେଉ, ଆପଣଙ୍କର ଯାହା ଇଚ୍ଛା ସେୟା ହେବ— କହି ବିମଳ ବାବୁ ନିଜ ଘରକୁ ଫେରି ଗଲେ । ଆନନ୍ଦରେ ତାଙ୍କର ପାଦ ଭୂଇଁରେ ଲଗୁ ନ ଥିଲା । ଦ୍ରୁତ ଗତିରେ ଆସି ଘରେ ପହଞ୍ଚି ସେ ଡାକି ଦେଲେ— କମଳା ! କମଳା ! କୁଆଡ଼େ ଗଲ । ବେଗେ ଆସ । ଶୀଘ୍ର ସବୁ ଆୟୋଜନ କର । ନା, ଶୀଘ୍ର ନୁହେ, ଏକ୍ଷଣି ଏହି ମୁହୂର୍ତ୍ତରେ । ଆଉ ସେ ଟୋକାଟା କୁଆଡ଼େ ଗଲା ? ଆମ ରମେଶ ? ତାହାକୁ ତୁରନ୍ତ ମୋ ଠାକୁ ଡାକି ଦିଅ ।

ନିଜ ସ୍ୱାମୀଙ୍କର ଅଜବ ଢଙ୍ଗଢାଙ୍ଗ ଦେଖି କମଳା ଦେବୀ ହଡ଼ବଡ଼େଇ ଗଲେ । ରମେଶ ତ କେତେ ଦିନ ହେଲା ଘରେ ନାହିଁ, ତାହାକୁ ଏକ୍ଷଣି ତାହାଙ୍କ ପାଖକୁ ପଠାଇଦେବା ପାଇଁ ଏତେ ତମ୍ବି ତୋଫାନ ବା କାହିଁକି ? କାରଣ କଅଣ ? ତାଙ୍କର ମୁଣ୍ଡ ହଠାତ୍ ଖରାପ ହୋଇଗଲା ନା କଅଣ ? ତେଣୁ କମଳା ଦେବୀ ତାହାଙ୍କୁ ଧୀରେ ଧୀରେ କହିଲେ— ତୁମେ ଆଜି ଏସବୁ କଅଣ କହୁଛ ? ତୁମକୁ କଅଣ ମାଲୁମ ନାହିଁ ଯେ ରମେଶ ଏଠାରେ ନାହିଁ ? ତୁମେ ପରା ତାହାକୁ ଏ ଘରୁ ବାହାର କରିଦେଲ ! ସେ ଆଉ କେଉଁଠି ଯାଇ ରହିଥିବ ।

ବିମଳ ବାବୁ କହିଲେ— ତାହା ହେଲେ ରମେଶ କେଉଁଠି ଅଛି, ମୋତେ ଏକ୍ଷଣି ସେଠାକୁ ନେଇ ଚାଲ ! ହଁ, ତୁମର ଗହଣାଗଣ୍ଠି ସବୁ ବାହାର କର । ନୂଆ ଗହଣା ତିଆରି କରିବା ପାଇଁ ବର୍ତ୍ତମାନ ମୋତେ ସମୟ ନାହିଁ । ଶାଢ଼ିଗୁଡ଼ାକ ବି ଧରି । ତୁମର ଯାହା କିଛି ଅଛି ସବୁ ଗୋଟାଗୋଟି କରି ନେଇ ଚାଲ ।

ଦଣ୍ଡେ ହେଲେ ଉଚ୍ଛୁର କଲେ ବ ଚଳିବ ନାହିଁ । ଯେ କୌଣସି ମତେ ଆଜ ରମେଶର ବାହାଘର କରିବାକୁ ହେବ ।

ଏଁ, ବିବାହ ? ରମେଶର ! କଅଣ କହୁଛ ତୁମେ ? ତୁମ ମୁଣ୍ଡ ଖରାପ ହୋଇ ଗଲାଣି ନା କଅଣ ? କେଉଁଠି ରମେଶର ବିବାହ ତୁମେ ଠିକ୍ କରିଛ ? କାହାର ଝିଅ ? ଘର କେଉଁଠି ? ଏସବୁ କଥା ତ ପ୍ରଥମେ ମୋର ଜାଣିବା ଦରକାର । କମଳା ଦେବୀ ଆକାଶରୁ ପଡ଼ିଲା ଭଳି ଅବାକ ହୋଇଯାଇ ଏତକ କହି ଗଲେ ।

ବିମଳ ବାବୁ ପୁଣି ପାଟି କରି କହିଲେ— ମୋ କଥା କଅଣ ତୁମକୁ ବିଶ୍ୱାସ ହେଉ ନାହିଁ ? ମୋତେ କଅଣ ତୁମେ ଅବିଶ୍ୱାସ କରୁଛ ? କମଳା, ତୁମର କଅଣ ହୋଇଛି ? ତୁମ ପାଖରେ ମୋତେ ସବୁ କଥା ଗୋଟି ଗୋଟି କରି ଖୋଲି କହିବାକୁ ହେବ ? ଏକ୍ଷଣି ଆଉ ପଦେ କଥା କହିବାକୁ ମୋର ସମୟ ନାହିଁ । ଯେ କୌଣସି ମତେ ଆଗ ବିବାହଟା ସାରି ଦେବାକୁ ହେବ । ତୁମେ ଜିନିଷପତ୍ର ସବୁ ସଜାଡ଼ି ସଜାଡ଼ି କରି ରଖ, ମୁଁ ଗୋଟାଏ ଟାଙ୍ଗା ଡାକି ଆଣୁଛି ।

କମଳା ଦେବୀ ଥ ହୋଇ କାନ୍ଥକୁ ଚାହିଁ ରହିଲେ । ସେ କିଛି ବୁଝି ପାରିଲେ ନାହିଁ । ମାତ୍ର ସ୍ୱାମୀଙ୍କ କଥା ମୁତାବକ ସେ ଜିନିଷପତ୍ର ସବୁ ବନ୍ଧାବନ୍ଧି କରି ସାରିଲା ବେଳକୁ, ବିମଳ ବାବୁ ଗୋଟିଏ ଟାଙ୍ଗା ନେଇ ପହଞ୍ଚି ଗଲେ ।

ଜିନିଷପତ୍ର ସବୁ ଟାଙ୍ଗା ଉପରେ ଲଦା ହେଲା । ସ୍ୱାମୀ ସ୍ତ୍ରୀ ଦୁହେଁ ଯାଇ ତାହା ଭିତରେ ବସିଲେ । ଗାଡ଼ି ଚାଲିଲା । ବିମଳ ବାବୁ ପ୍ରଫୁଲ୍ଲ ବଦନରେ କହିଲେ— କମଳା, ଜାଣ ତୁମେ, ମୁଁ ତୁମକୁ ଏକ୍ଷଣି କେଉଁଠାକୁ ନେଇ ଯାଉଛି ? ତୁମକୁ ମୁଁ ରମେଶର ବସାକୁ ନେଇ ଯାଉଛି । ଶୁଣିଲ, ସେ କୁଆଡ଼େ ଗୋଟାଏ

ଭଡ଼ା ଘର ନେଇ ରହିଛୁ । କିନ୍ତୁ ସେ ଘରଟା ଏକ୍ଷଣି ସମ୍ପୂର୍ଣ୍ଣ ହୋଇ ନାହିଁ । ଖାଲି କୋଠା ହେଲେ ଯେ ସଂସାର୍‌ରେ କାହାର ଘର ହୋଇଗଲା, ସେ କଥା କଅଣ ରମେଶଙ୍କୁ ମାଲୁମ ଅଛି ? ଯେତେ ହେଲେ ଆମ ଆଖିରେ ସେ ପିଲାଟାଏ ନା ! ମୁଁ ଆଉ ତୁମେ ଏକାଠି ନ ଥିଲେ କଅଣ କେବେ ଆମର ଗୋଟାଏ ଘର ହୋଇ ଥାଆନ୍ତା ?

ବିମଳ ବାବୁଙ୍କ କଥାରେ କମଳାର ମନ ଭିତରେ ଆନନ୍ଦର କଲ୍ଲୋଳ ଖେଳିଲା ଏବଂ ମୁଖ ମଣ୍ଡଳରେ ହସର ରେଖା ଝଲସିଲା ।

ଗଡ଼ୁଁ ଗଡ଼ୁଁ ଟାଙ୍ଗାଟା ଯାଇ ଡାକ୍ତର ରମେଶର ଦୁଆର ମୁହଁରେ ପହଞ୍ଚିଲା । ସେତେ ବେଳେ ରମେଶ ବାରଣ୍ଡାରେ ପଡ଼ି ରହି ମନେ ମନେ ଗୁଣୁଗୁଣୁ କରୁଥିଲା । ତାହାର ଦୁଆର ମୁହଁରେ ଗୋଟାଏ ଟାଙ୍ଗା ରହିବାର ଦେଖି, ସେ ଧଡ଼ପଡ଼ ହୋଇ ଉଠି ପଡ଼ିଲା ଏବଂ ଦେଖିଲା ଯେ ତାହାର ଭାଇ ଓ ଭାଉଜ ଗାଡ଼ିରୁ ଓହ୍ଲାଉଛନ୍ତି । ସେ ଖାଲି ପାଦରେ ଦାଣ୍ଡକୁ ଧାଇଁ ଗଲା ଏବଂ ସେମାନଙ୍କୁ ଭୂଇଁରେ ପ୍ରଣାମ କଲା । ଭାଇ ଓ ଭାଉଜ ମଧ୍ୟ ତାହାକୁ ଆଶୀର୍ବାଦ କଲେ । ବିମଳ ବାବୁ ରମେଶକୁ କହିଲେ— ଜିନିଷପତ୍ର ସବୁ ନେଇ ଘରେ ରଖ ।

ଭାଇର ଆଦେଶ ମୁତାବକ ତତ୍‌କ୍ଷଣାତ ରମେଶ ଗାଡ଼ିରୁ ଜିନିଷପତ୍ର ସବୁ କାଢ଼ି ନେଇ ଘରେ ରଖିବାକୁ ଲାଗିଲା ।

ଇତି ମଧ୍ୟରେ ବିମଳ ବାବୁ ଓ କମଳା ଦେବୀ ଘରର ଚାରି ଆଡ଼େ ଘୂରି ବୁଲି ଭଲ କରି ଦେଖିଲେ । ଘରଟି ସେମାନଙ୍କୁ ପସନ୍ଦ ହେଲା । ବୈଠକଖାନାରୁ ଆସି ସେମାନେ ରମେଶର ଶୟନ କକ୍ଷରେ ପ୍ରବେଶ କଲେ । ସବୁ ପ୍ରଥମେ ଯେଉଁ ବସ୍ତୁଟି ସେମାନଙ୍କର ଦୃଷ୍ଟି ଆକର୍ଷଣ କଲା, ତାହା ହେଉଛି ରମେଶର ବିଛଣା ଉପରେ

କାନ୍ଥରେ ଟଙ୍ଗା ହୋଇଥିବା ସେମାନଙ୍କର ଫଟ ଖଣ୍ଡିକ । ଫଟରେ ଗୋଟିଏ ସଜଫୁଲ ହାର ଝୁଲା ହୋଇଥିଲା ଏବଂ ତାହା ତଳେ ଜଳନ୍ତା ଧୂପକାଠିରୁ ଧୂଆଁ ବାହାରି ଘର ମହକାଉଥିଲା ।

ଏହି ଦୃଶ୍ୟଟି ଦେଖି ବିମଳ ବାବୁଙ୍କ ସର୍ବାଙ୍ଗରେ ପୁଲକ ସଞ୍ଚାରିତ ହେଲା । ତାଙ୍କର ଆଖି ଦୁଇଟିରେ ଲୁହ ଛଳଛଳ ହେଲା । ତାଙ୍କର ଅନୁତାପର ସୀମା ରହିଲା ନାହିଁ । ସେ ମନେ ମନେ ଗୁଣି ହେଲେ, ଯେପରି କମଳା ତାହାଙ୍କୁ ଠିକ୍ କଥା କହୁଥିଲା— ଆଜି ଏହି ଅନୁତାପର ନିଆଁ ତୁମ ଅନ୍ତରରେ ଧିକଧିକ ହୋଇ ଜଳୁଛି । ଏହା କେବେ ହେଲେ ଲିଭିବ ନାହିଁ । ତୁମେ ଏମିତି ଜଣେ ଲୋକକୁ ମିଛରେ ଅପରାଧୀ କରିଛ, ଯାହାର ମନ ଗଙ୍ଗା ଜଳ ପରି ପବିତ୍ର ଓ ନିର୍ମଳ ।

ବିମଳ ବାବୁ ରୁମାଲରେ ଆଖିରୁ ଲୁହ ପୋଛି କହିଲେ— କମଳା ! ମୋତେ କ୍ଷମା କର ! ମୁଁ ଗୁରୁତର ଅପରାଧ କରିଛି ।

କମଳା ଦେବୀଙ୍କର ମନ ଅପୂର୍ବ ଆନନ୍ଦରେ ପରିପୂର୍ଣ୍ଣ ହେଲା । ସେ ନିର୍ନିମେଷ ନୟନରେ କାନ୍ଥରେ ଟଙ୍ଗା ହୋଇଥିବା ଫଟଟି ଆଡ଼କୁ ଅନାଇ ରହିଲେ ।

## ୯

କିଛି ସମୟ ପରେ ବିମଳ ବାବୁ ବଜାରରୁ ଫେରିଲେ । ବଜାରରୁ ହରେକ ରକମର ଜିନିଷ ସେ କିଣି ଆଣିଥିଲେ । ସେ ଖୁବ୍ ଗର୍ବିତ ଭଙ୍ଗୀରେ ଘରେ ଆସି ପହଞ୍ଚିଲେ । ତାଙ୍କର ମୁଖରେ ଆନନ୍ଦର ସ୍ୱଚ୍ଛ-ଉଜ୍ଜ୍ୱଳ ପ୍ରକାଶ କମଳା ଦେବୀ ବହୁତ ଦିନ ହେଲା

ଦେଖି ନ ଥିଲେ । କମଳା ଦେବୀ ବିମଳ ବାବୁଙ୍କୁ ଆଉ ଗୋଟିଏ କୋଠରୀକୁ ନେଇଗଲେ ।

ପଲଙ୍କ ଉପରେ ବସି ବିମଳ ବାବୁ କହିଲେ — କମଳା ! ତୁମେ କାହିଁକି ଚିନ୍ତିତ ଥିଲ ଭଳି ଜଣା ଯାଉଛ । କଥା କଅଣ ? ରମେଶର ବିବାହରେ ବୋଧ ହୁଏ ତୁମେ ଖୁସି ନୁହ ?

ଏହା ଶୁଣି କମଳା ଦେବୀ ଯେ ରାଗିଗଲେ, ତାହା ବୁଝିବାକୁ ବିମଳ ବାବୁଙ୍କୁ ବେଶି ବେଳ ଲାଗିଲା ନାହିଁ । ତେବେ ସେ ଆଜି ଆଉ ଡରିଲେ ନାହିଁ ! ଶେଷରେ କମଳା ଦେବୀ ଗର୍ଜନ କଲେ— କେଉଁ ଝିଅ ସାଙ୍ଗରେ ରମେଶର ବିବାହ କରିବାକୁ ସ୍ଥିର କରିଛ, ମୁଁ ତ ଏଯାଏ ଜାଣି ପାରିଲି ନାହିଁ ?

ଆପଣା ସିଦ୍ଧାନ୍ତରେ ଅଟଳ ରହି ବିମଳ ବାବୁ ଆବେଦନର ସ୍ୱରରେ କହିଲେ— କମଳା ! ତୁମେ ମୋ ସମ୍ମାନ ରଖ ବା ନ ରଖ, ମୁଁ ଯାହା ଠିକ୍ କରିଛି ନିଶ୍ଚୟ ତାହା କାର୍ଯ୍ୟରେ ପରିଣତ କରିବି । ଶେଠ ହରିହର ପ୍ରସାଦର ଝିଅ କୁମୁଦ ସହିତ ରମେଶର ବିବାହ କରିବି ବୋଲି ମୁଁ ସ୍ଥିର୍ କରିଛି । ମୃତ୍ୟୁ ଶଯ୍ୟାରେ ଶୋଇ ଶେଠଜୀ ମୋତେ ଏହି ଅନୁରୋଧ କଲେ । ଏ ଅନୁରୋଧକୁ ଉପେକ୍ଷା କରିବା ମୋ ପକ୍ଷରେ କୌଣସି ମତେ ସମ୍ଭବ ହେଲା ନାହିଁ । ଶେଠଜୀ ମୋର ବହୁତ ଉପକାର କରିଛନ୍ତି ।

ବିମଳ ବାବୁଙ୍କ କଥା ଶୁଣି କମଳା ଦେବୀଙ୍କ ମୁଖରେ ହସର ରେଖା ପ୍ରକଟିତ ହେଲା । ସେ ଆନନ୍ଦରେ ଗଦଗଦ ହୋଇ କହିଲେ— କିନ୍ତୁ ରମେଶକୁ କେଣି ଏହି କଥା କୁହ ନାହିଁ ।

କମଳା ଦେବୀଙ୍କ ମୁଖରେ ହସ ଫୁଟିବାର ଦେଖି ବିମଳ ବାବୁଙ୍କର ଆନନ୍ଦ ଦୁଇ ଗୁଣ ବଢ଼ିଗଲା । ରମେଶ ତାହାର

କୋଠରୀରେ ରହି ଦେଖିଲା, ସେମାନେ ହସ ହସ ମୁଖରେ ପାଖ କୋଠରୀରୁ ବାହାରି ଆସିଲେ ।

ନିଜର ଭଉଜଙ୍କର ସୁହାସ୍ୟ ମୁଖ ଦେଖି ତାଙ୍କର ମନୋଭାବ ବୁଝିବାକୁ ରମେଶର ଆଉ ବାକି ରହିଲା ନାହିଁ । କୁମୁଦ ଛଡ଼ା ଆଉ କାହା ସହିତ ଯେ ତାହାର ଭାଇ ତାହାର ବିବାହ ଠିକ୍ କରି ନାହାନ୍ତି, ସେ ତାହା ଅତି ସହଜରେ ଅନୁମାନ କଲା ।

ରମେଶ ସମସ୍ତଙ୍କର ଦୃଷ୍ଟି ଏଡ଼ି ଦେଇ ଚୁପି ଚୁପି ଘରୁ ଚାଲି ଯାଇ ସମସ୍ତଙ୍କ ଅଲକ୍ଷ୍ୟରେ ଶେଠ ହରିହର ପ୍ରସାଦର ଘରେ ଯାଇ ହାଜର ହେଲା । ଦେଖିଲା, ସେଠାରେ ମଧ୍ୟ ବିବାହର ସମସ୍ତ ଆବଶ୍ୟକୀୟ ଆୟୋଜନ ଚାଲିଛି । ଝରକା ବାଟେ ଘର ଭିତରେ ପ୍ରବେଶ କରି ସେ ସିଧା କୁମୁଦର କୋଠରୀରେ ଉପସ୍ଥିତ ହେଲା । ସେତେବେଳେ କୁମୁଦ କନ୍ୟାର ବେଶରେ ସଜ ହୋଇ ଦର୍ପଣ ସାମନାରେ ଛିଡ଼ା ହୋଇଥିଲା । ତାହାର ଦୁଇ ଆଖିରୁ ଲୋତକର ଧାର ବହୁଥିଲା । କଅଣ ଯେ ହେବ, ସେ ତାହା ଜାଣି ନ ଥିଲା । ଦର୍ପଣରେ ରମେଶର ଛାଇ ପଡ଼ିଲା କ୍ଷଣି ସେ ଚମକି ପଡ଼ି ଉଠି ଠିଆ ହେଲା । ତାହାର ଦୁଇ ଗାଲ ଲୁହରେ ଭିଜି ଯାଇଥିଲା ।

କୁମୁଦ ଲାଜରେ ମଥା ତଳକୁ ପୋତିଲା । ରମେଶ ଗମ୍ଭୀର ଭାବରେ କହିଲା— କୁମୁଦ ! ତୁମେ ବିବାହ ହେବାକୁ ଯାଉଛ ! କିନ୍ତୁ ମୋର ଘର ବାନ୍ଧି ଦେବାକୁ ଯେ ତୁମେ ପ୍ରତିଜ୍ଞା କରିଥିଲ ! ହେଉ, ମୋ ଘର ଯେମିତି ଅଛି ସେମିତି ଥାଉ, ତୁମେ ଆଗ ନିଜ ଘରଟା ଭଲ ଭାବରେ ତିଆରି କର ।

କୁମୁଦର ଆଖିରେ ପୁଣି ଲୁହ ଛଳଛଳ ହେଲା । ରମେଶ ପାଖକୁ ଆଗେଇ ଆସି ସେ ଧୀର କଣ୍ଠରେ ଆବେଦନ କଲା— ରମେଶ ! ମୋତେ ନେଇ ତୁମେ କେଉଁଆଡ଼େ ପଳାଇ ଯାଅ ।

ରମେଶ ହସି ପକାଇ କହିଲା— କୁମୁଦ ! ରମେଶ କୌଣସି କାମ ଲୁଚି ଛପାରେ କରିବାକୁ ଶିଖି ନାହିଁ । ଲୁଚାଇ କିଛି କାମ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।

ଏହା କହି ରମେଶ ସଙ୍ଗେ ସଙ୍ଗେ ସେଠାରୁ ଚାଲିଗଲା ଆଉ କୁମୁଦ ଜୋରରେ କାନ୍ଦିବାକୁ ଲାଗିଲା ।

ସନ୍ଧ୍ୟା ବେଳେ ବିବାହର ଅନୁଷ୍ଠାନ ଶେଷ ହେଲା । ବିବାହ ବାସରରେ ବହୁରୂପୀ ରମେଶକୁ ଦେଖି କୁମୁଦ ଚମକି ପଡ଼ିଲା । ନିଜର ଦୁଇ ଆଖିକୁ ସେ ପ୍ରଥମେ ବିଶ୍ୱାସ କରି ପାରିଲା ନାହିଁ । ଶେଷରେ ସେ ମନେ ମନେ କହିଲା— ପୁରୁଷ ଜାତିଟା କପଟୀ !

ବିବାହ ପରେ ବର ଓ କନ୍ୟା ଦୁହେଁ ଯାଇ ଶେଠ ହରିହର ପ୍ରସାଦର ଆଶୀର୍ବାଦ ନେଲେ । ତାହାର ଅନ୍ତିମ ଇଚ୍ଛା ପୂରଣ କରି-ଥିବା ଯୋଗୁଁ ସେ ବିମଳ ବାବୁଙ୍କୁ ଧନ୍ୟବାଦ ଜଣାଇଲା ।

ସେହି ଦିନ ରାତିରେ ବିମଳ ବାବୁ ଭାଇ ଓ ଭାଇବୋହୂକୁ ନେଇ ଘରକୁ ଫେରି ଆସିଲେ । କମଳା ଦେବୀ ନବ ଦମ୍ପତିଙ୍କୁ ସାଦରେ ବରଣ କଲେ । କୁମୁଦର ଋଣ ସ୍ୱୀକାର କରି ସେ କହିଲେ —ମାଆ କୁମୁଦ ! ତୁମେ ମୋ ପୁଅକୁ ରକ୍ଷା କଲ । ତୁମର ସାହଚର୍ଯ୍ୟ ନ ପାଇଥିଲେ ସେ ଯେ କେଉଁଠି ଘୂରି ବୁଲନ୍ତା, କିଏ କହି ପାରିବ ! ଆଜି ତୁମେ ତାହାକୁ ନିଜର ଘର କରି ଦେଇଛ ଏବଂ ତୁମର ଗଢ଼ା ଘରେ ମଧ୍ୟ ନିଜେ ଘରଣୀ ହୋଇଛ । ତୁମର ଏହି ଘରେ ଛୁଆ ପିଲା ଭରି ଯାଆନ୍ତୁ । ଆମ ପାଖରେ ଯାହା କିଛି ଥିଲା, ରମେଶର ଭାଇ ନିଜର ସାନ ପ୍ରିୟ ଭାଇ ଓ ଭାଇବୋହୂ ପାଇଁ ସେସବୁ ନେଇ ଆସିଛନ୍ତି । ତୁମ୍ଭେମାନେ ସୁଖରେ ରୁହ, ଆମର ଆନ୍ତରିକ କାମନା ।

ତା ପରେ କମଳା ଦେବୀ ବିମଳ ବାବୁଙ୍କ ଆଡ଼କୁ ଅନାଇ କହିଲେ— ଚାଲ, ଏବେ ଆମେ ଆମ ଘରକୁ ଫେରିଯିବା । ରମେଶର ସଂସାର ଖାଲି ଥିଲା । ତାହାକୁ ପୂର୍ଣ୍ଣ କରିଦେବାର ଦାୟିତ୍ୱରୁ ଆମେ ଏତେ ଦିନେ ମୁକ୍ତ ହେଲେ ।

ଭଉଜଙ୍କ କଥା ସରୁ ନ ସରୁଣୁ ରମେଶ ଓ କୁମୁଦ ଉଠି ଯାଇ ତାହାଙ୍କୁ ପ୍ରଣାମ କଲେ । ସେମାନଙ୍କର ଚକ୍ଷୁ ଆନନ୍ଦାଶ୍ରୁରେ ସଜଳ ହୋଇଗଲା । ଭଉଜଙ୍କର ପାଦ ଦୁଇଟି ମୁଠାଇ ଧରି ରମେଶ କହିଲା— ଭଉଜ, ନିଜ ଅଜାଣତରେ ମୁଁ ଯେଉଁ ଅପରାଧ କରିଛି, ତୁମେ କି ଭାଇ ତ ସେଥି ପାଇଁ ମୋତେ କ୍ଷମା କଲ ନାହିଁ ?

ରମେଶର କଥା ଶୁଣି ବିମଳ ବାବୁଙ୍କର ହୃଦୟ ବେଦନାରେ ମଥିତ ହେଲା । ସେ ଅଶ୍ରୁ ସଜଳ ନୟନରେ କହିଲେ— ରମେଶ ! ଭୁଲ ତ ତୋର ନୁହେଁରେ ଭାଇ, ଭୁଲଟା ଯେ ମୋର ! ଅପରାଧର ପ୍ରାୟଶ୍ଚିତ୍ତ ମୋତେ କରିବାକୁ ହେବ । ନୋହିଲେ ମୋର ପରିତ୍ରାଣ ନାହିଁ ।

କୁମୁଦ କହିଲା— ଅପା । ମୁଁ ଆପଣମାନଙ୍କୁ କୌଣସି ମତେ ଏଠାରୁ ଛାଡ଼ିଦେବ ନାହିଁ । ଏଠାଙ୍କର ଏକା ରଖି ଦେଇ ଯିବାକୁ କଅଣ ଆପଣ ମୋତେ ଡାକି ଆଣିଛନ୍ତି ?

କୁମୁଦର ଆବେଦନରେ ଏପରି ଆନ୍ତରିକତାର ସ୍ୱର ଓ ହୃଦୟର ପରଶ ନିହିତ ଥିଲା ଯେ କମଳା ଦେବୀ ଓ ବିମଳ ବାବୁ ଆଉ ସେଠାରୁ ଚାଲି ଯାଇ ପାରିଲେ ନାହିଁ । ଆପଣା ମନର ମଧୁରିମା ଦେଇ କୁମୁଦ ଏହି ପରିବାରର ଜୀବନରୁ ସବୁ ମଳିନତା ଓ ଅବସାଦ ଦୂର କରି ସ୍ୱଚ୍ଛ ପ୍ରାଣର ଏକ ଅନାବିଳ ପ୍ରବାହ ବୁହାଇ ଦେଲା ।

## ହାରିଏଟ୍ ଏଲିଜାବେଥ ବୀଚର ଷ୍ଟୋ

# ଟେ ମ କ କା

### ୧

ଉତ୍ତର ଆମେରିକାର କେଣ୍ଟାକି ରାଜ୍ୟର ଗୋଟିଏ ସହର । ଗୃହସ୍ଥ ଶେଲବି ନିଜର ଭୋଜନ କକ୍ଷରେ ବସି ହାଲି ନାମକ ଜଣେ ଦାସ ବ୍ୟବସାୟୀ ସହିତ ଆଲୋଚନା ପ୍ରସଙ୍ଗରେ ମନ୍ତବ୍ୟ କଲେ—ବାସ୍ତବିକ ଟେମ ଜଣେ ଧାର୍ମିକ, ଧୀର ସ୍ଥିର, ବିବେଚକ ଓ ସତ୍ ନିଗ୍ରୋ । ସେ ମନ ପ୍ରାଣରେ ଖାଣ୍ଟି ଖ୍ରୀଷ୍ଟାନ, ଆଉ ସବୁ କାମରେ ପାରଙ୍ଗମ । ତାହା ଭଳି ଲୋକ ମିଳିବା ଏତେ ସହଜ ନୁହେଁ । ଯେ କୌଣସି ଜାଗାରେ ତାହାର ଦାମ ନିଶ୍ଚୟ ଖୁବ୍ ଚଢ଼ା ହେବ ।

ହାଲି କହିଲେ— ଅନେକଙ୍କର ଧାରଣା, ନିଗ୍ରୋମାନେ ଧାର୍ମିକ ନୁହନ୍ତି । କିନ୍ତୁ ମୁଁ ଥରେ ଜଣେ ଧାର୍ମିକ ନିଗ୍ରୋକୁ କମ୍ ଦାମରେ କିଣି ବଜାରରେ ବେଶ୍ ଚଢ଼ା ଦାମରେ ବିକିଥିଲି ।

ଶୁଣନ୍ତୁ, ଗଲା ବର୍ଷ ମୁଁ ଟେମକୁ ବିଶ୍ୱାସ କରି ଗୋଟାଏ କାମରେ ସିନସିନାଟି ପଠାଇଥିଲି । ସେ ଫେରି ଆସି ମୋତେ ପାଞ୍ଚ ଶହ ଡଲାର ଦେଇଥିଲା । ବାସ୍ତବିକ ଟେମକୁ ଛାଡ଼ିବାକୁ ମୋର ବଡ଼ ଦୁଃଖ ହେଉଛି । ଯଦି ଆପଣଙ୍କର ବିବେକ ଥାଏ, ତାହା ହେଲେ ଟେମର ଦାମ ବାବଦକୁ ମୋର ସବୁ ଦେଣା ମାଫ କରିଦେବା ଆପଣଙ୍କର ଉଚିତ ।

ବ୍ୟବସାୟୀଙ୍କର ଯେତିକି ବିବେକ ଥିବା ସମ୍ଭବ, ମୋର ଅବଶ୍ୟ ସେତିକି ଅଛି । ମାତ୍ର ଏ ବର୍ଷ ଅନ୍ୟକୁ ଦୟା ଦେଖାଇବା

ମୋ ପକ୍ଷରେ ଅତ୍ୟନ୍ତ କଠିନ । ହଁ, ଏଠାରେ କୌଣସି ନଗ୍ରୋ ପୁଅ କି ଝିଅ ନାହାନ୍ତି, ଯାହାକୁ ଆପଣ ଟମ ସାଙ୍ଗରେ ବଦଳ ପାରିବେ ?

ନା, ସତ କହିବାକୁ ଗଲେ ମୁଁ ବାଧ ହୋଇ ଟମକୁ ବିକୁଛି । ନୋହିଲେ କୌଣସି ପୁତ୍ର୍ଣୀ ଚାକରକୁ ଛାଡ଼ିବା ପାଇଁ ମୋର ମୋଟେ ଇଚ୍ଛା ନାହିଁ ।

ଏତିକ ବେଳେ ପ୍ରାୟ ପାଞ୍ଚ ବର୍ଷର ଗୋଟିଏ ମୁଲାଟ୍ଟୋ ପିଲା ଘର ଭିତରକୁ ପଶି ଆସିଲା— କୁଞ୍ଚକୁଞ୍ଚିଆ ବାଳ, ଉଜ୍ଜ୍ୱଳ ଟଣା ଟଣା ଆଖି, ସପ୍ରତିଭ, ହଳଦିଆ ଓ ଲାଲ ପୋଷାକ ପରିହିତ ।

ଶେଲବୀ ତାହା ଆଡ଼କୁ ଥୋକାଏ ଅଙ୍ଗୁର ଫିଙ୍ଗି ଦେଇ କହିଲା— ଜିମ, ତୁ କେମିତିକା ନାଚ ଗୀତ ଜାଣୁ, ଭଦ୍ରଲୋକଙ୍କୁ ଟିକିଏ ଦେଖା ତ ।

ତତ୍‌କ୍ଷଣାତ ଜିମ ଜଙ୍ଗଲି ଗୀତର ସୁର ସାଙ୍ଗରେ ତାଳ ମିଳାଇ ନାଚି ନାଚି ଗାଇବାକୁ ଲାଗିଲା । ବାହାବା କହି ହାଲି କେତେ କୋଷା କମଳା ଲେମ୍ବୁ ତାହା ଆଡ଼କୁ ଫିଙ୍ଗି ଦେଲା । ତା ପରେ ପିଲାଟି ଶେଲବୀର ଫରମାସ ମୁତାବକ ବାତୁଆ କାଡ଼ଜୋ କକାର ଗୋଲ ଓ ବୁଢ଼ା ରବନର ଉପାସନାର ଢଙ୍ଗ ଅନୁକରଣ କରି ଦେଖାଇଲା ।

ଏସବୁ ଦେଖି ଭାରି ଖୁସି ହୋଇ ହାଲି ଶେଲବୀର କାନ୍ଧ ଉପରେ ହାତ ରଖି କହିଲା— ଏହି ପିଲାଟିକୁ ଟମ ସାଙ୍ଗରେ ଦେଲେ ମୁଁ ଆପଣଙ୍କୁ ସବୁ ଋଣର ଦାୟରୁ ମୁକ୍ତ କରି ଦେବି ।

ପିଲାଟିକୁ ତାହାର ମାଆର କୋଳରୁ ଛଡ଼ାଇ ନେବାଟା ମୁଁ ପସନ୍ଦ କରେ ନାହିଁ ।

ଆଚ୍ଛା, ସେହି ସ୍ତ୍ରୀ ଲୋକଟିକୁ କିଛି ଧାନ ପାଇଁ ଆଉ କେଉଁଠାକୁ ପଠାଇ ଦେଇ ପାରିବେ ନାହିଁ ? ତାହା ହେଲେ ପିଲାଟିକୁ ସହଜରେ ଏଠାରୁ ଖସାଇ ନେଇ ହୁଅନ୍ତା ।

ତାହା କଅଣ ହୁଏ ? ତେବେ ମୋ ସ୍ତ୍ରୀ ସାଙ୍ଗରେ ପରାମର୍ଶ କରି ମୁଁ ଦେଖିବ।

ହେଉ, ମୁଁ ସଞ୍ଜ ବେଳକୁ ପୁଣି ଆସିବ ।

ହାଲ ଉଠି ଗ୍ଲଲଗଲା । ଶେଲବୀ ବସି ଭାବବାକୁ ଲାଗିଲା ଅନେକ ଦେଣା କଥା । ସେ ହାଲ ଠାରୁ ଗୁଡ଼ାଏ ୪ଙ୍କା କରଜ କରିଛି ଏବଂ ବ୍ୟବସାୟରେ କ୍ଷତଗ୍ରସ୍ତ ହୋଇ ଥିବାରୁ ୪ମ ପରି ଭଲ ଗ୍ଳକର ଓ ଦାସୀ ଏଲାଜାର ପିଲାଟିକୁ ବକବାକୁ ବାଧ ହେଉଛି । ଶେଲବୀ ଜଣେ ଭଲ ଲୋକ, ଦାସ ଦାସୀ ପ୍ରତି ସଦୟ ବ୍ୟବହାର କରେ । ଦୁଆରେ କାନ ପାତ ମୁନବ ଓ ହାଲର କଥାବାର୍ତ୍ତାରୁ ତାହାର ପୁଅ ହାରିକୁ ବକବାର କଥା ଜାଣି ପାରି, ଏଲାଜା ମୁନବାଣୀ ଆଗରେ ଗୁହାରି କରି କାନ୍ଦିବାକୁ ଲାଗିଲା ।

ଶ୍ରୀମତୀ ଶେଲବୀ ତାହାକୁ ଆଶ୍ୱାସନା ଦେଲା ଯେ ସେ ହାରିକୁ କୌଣସି ମତେ ଏଠାରୁ ଗ୍ଳାଡ଼ି ଦେଇ ପାରିବ ନାହିଁ ।

ସେ ଦ୍ଦନ ଶ୍ରୀମତୀ ଶେଲବୀ ଗାଡ଼ିରେ ଚଢ଼ି ବୁଲବା ପାଇଁ ବାହାରି ଗଲା । ଏଲାଜା ଦାଣ୍ଡ ଦୁଆରେ ଠିଆ ହୋଇ ମଳନ ବଦନରେ ଗାଡ଼ିକୁ ଅନାଇଥିଲା । ସେହି ସମୟରେ ତାହାର କାନ୍ଧ ଉପରେ କାହାର ହାତର ପରଶ ପାଇ ସେ ବୁଲ ପଡ଼ି ଦେଖିଲା, ନିଜର ସ୍ୱାମୀ ଜର୍ଜ । ତାହାର ମୁନବ ଜର୍ଜକୁ ଗୋଟିଏ ଚଟକଳରେ ଭଡ଼ା ଲଗାଇଥିଲା । ବୁଦ୍ଧି ଖଟାଇ ଶଣ ପରିଷ୍କାରର ଯନ୍ତ୍ର ଆବିଷ୍କାର କରିଥିବାରୁ, କାରଖାନାର ମାଲକ ଜର୍ଜକୁ ଭାରି ଭଲ ପାଉଥିଲା । କନ୍ତୁ ସଙ୍କୀର୍ଣ୍ଣ ମନା ମୁନବ ତାହା ସହି ନ ପାରି ଜର୍ଜକୁ କାରଖାନାରୁ କାଢ଼ି ଆଣି ତାହା ଉପରେ ନାନା ରକମ ଅତ୍ୟାଚ୍ଚର କଲା ।

ଏଲାଜା ଜର୍ଜକୁ ନିଜର ଶ୍ରେଠ କୋଠରୀକୁ ନେଇ ଯାଇ ପଗ୍ଳରିଲା— ତୁମର ମୁଖ ଏମିତ ବିରସ ଦଶୁଛି କାହିଁକ ?

ଜର୍ଜର ସ୍ୱରରେ ବେଦନା ପ୍ରକଟିତ ହେଲା— ମୋର ସବୁ ଆୟୁ ମୁନିବ କାଢ଼ି ନେଲା । ନିଜ ଚେଷ୍ଟାରେ ମୁଁ ତାହା ଠାରୁ ଅଧିକ ଲେଖାପଢ଼ା ଶିଖିଛି । କିନ୍ତୁ ସେ ମୋତେ ଆଜିକାଲି ଏତେ ବେଶି କାମ କରାଉଛି ଯେ ମୋର ଟିକିଏ ବିଶ୍ରାମ ନାହିଁ । କାଲି ସେ ତାହାର ପୁଅ ଦ୍ୱାରା ମୋତେ ଚାବୁକରେ ପାହାର କରିବାକୁ ଲାଗିଲା, ମୁଁ ଅଚେତ ହେବା ଯାଏ । ତୁମେ ଯେଉଁ କୁକୁର ଛୁଆଟି ଦେଇଥିଲ, ସେଟାକୁ ବି ସେମାନେ ମାରି ଦେଲେ । ତାହାର କ୍ରୀତଦାସୀ ମିନାର ସାଙ୍ଗରେ ପୁଣି ମୋର ବିବାହ କରାଇଦେବ ବୋଲି ମୁନିବ ମୋତେ କେତେ ଥର କହିଲାଣି ।

ଏଲିଜା ଆବାକାବା ହେଲା— ଆମର ପରା ଥରେ ବିବାହ ହୋଇଛି !

କିନ୍ତୁ ଆଇନ ତାହା ସ୍ୱୀକାର କରେ ନାହିଁ । ଯେତେ ଦିନ ଯାଏ ମୁନିବର ଇଚ୍ଛା ହେବ, କ୍ରୀତଦାସ ଓ ଦାସୀମାନେ ସେତେ ଦିନ ଯାଏ ସ୍ୱାମୀ ସ୍ତ୍ରୀ ଭାବରେ ରହି ପାରିବେ ।

କିନ୍ତୁ ମୋ ମୁନିବ ଭଲ ଲୋକ ।

ହେଉ, ଏଲିଜା ! ବିଦାୟ !

କୁଆଡ଼େ ଯାଉଛ ?

କାନାଡ଼ାରେ ପହଞ୍ଚି ମୁଁ ତୁମକୁ ତୁମ ମୁନିବ ଠାରୁ କିଣି ନେବି ।

ଯଦି ଧରା ପଡ଼ ?

ତାହା ଆଗରୁ ମୃତ୍ୟୁ, ନଚେତ୍ ଦାସତ୍ୱରୁ ମୁକ୍ତି ।

ଜର୍ଜ ! ଆମ ମାଆ ପୁଅଙ୍କ ମୁହଁକୁ ଚାହିଁ ବରାବର ହସିଖୁସି ହୋଇ ରହିବ ।

ତା ପରେ ଦୁହେଁ ଆଖିର ଲୁହରେ ପରସ୍ପର ଠାରୁ ବିଦାୟ ନେଲେ ।

୨

ଶେଲବୀର ଘରର ଗୋଟାଏ ପଟରେ ଟମ କକାର କୁଟୀର, ଗଛର ମୋଟା ଗଣ୍ଡିରେ ତିଆରି । ସାମନାରେ ଗୋଟିଏ ଛୋଟ ବଗିଚା । ଟମର ସ୍ତ୍ରୀ ଘରଟିକୁ ସଜାଇ ରଖିଛି । ସେ ହେଉଛି ଶେଲବୀର ପ୍ରଧାନ ରାନ୍ଧୁଣୀ । ଘରର ସମସ୍ତେ ଟମକୁ "ଟମ କକା" ବୋଲି ଡାକନ୍ତି ଏବଂ ତାହାକୁ ଖୁବ୍ ଭଲ ପାଆନ୍ତି ।

ଟମ ନିଜ ଘରେ ବସି ଖଣ୍ଡିଏ ସିଲଟରେ ଇଂରେଜୀ ବର୍ଣ୍ଣବୋଧ ଦେଖି ଦେଖି ଏକ ମନରେ ଆସ୍ତେ ଆସ୍ତେ ଅକ୍ଷରସବୁ ଲେଖୁଥିଲା, ଆଉ ଶେଲବୀର ପୁଅ ବାଳକ ଜର୍ଜ ତାହା ପାଖରେ ବସି ଜଣେ ଶିକ୍ଷକ ପରି ଲକ୍ଷ୍ୟ କରୁଥିଲା ।

ତେଣେ ଶେଲବୀ ଋଣ ଦାୟରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ଟମ ଓ ହାରିକୁ ବିକିଦେବା ପାଇଁ ହାଲିଙ୍କୁ କାଗଜ କରି ଦେଇ ଦୀର୍ଘ ନିଃଶ୍ୱାସ ଛାଡ଼ି ମନେ ମନେ କହିଲା— ମୋର ସବୁ ଶେଷ ହୋଇଗଲା ।

ଏହା ଶୁଣି ଶ୍ରୀମତୀ ଶେଲବୀ ମୁଣ୍ଡରେ ହାତ ଦେଲା— ତୁମେ କାଅଣ କଲ ? ଟମ ପରି ମହତ ଓ ବିଶ୍ୱାସୀ ଲୋକ ଦୁନିଆରେ ବିରଳ । ସେ ତୁମ ପାଇଁ ଜୀବନ ଦେଇ ପାରେ । ତୁମେ ତାହାକୁ କାହିଁକି ବିକି ଦେଲ ! ତୁମକୁ ଏ ଦୁର୍ବୁଦ୍ଧି କିଏ ଦେଲା ?

ବେଶି ଦାମ ମିଳିବ ବୋଲି । ସେ ଏଲିଜାକୁ ମଧ୍ୟ ବେଶି ଦାମ ଦେଇ କିଣିନେବାକୁ ବସିଥିଲା, ମାତ୍ର ମୁଁ ସେଥିରେ ରାଜି ହେଲି ନାହିଁ ।

ଆମ ଦାସଦାସୀମାନଙ୍କୁ ଏତେ କାଳ ହେଲା ମୁଁ ଯାହା ସବୁ ଶିକ୍ଷା ଦେଇ ଆସିଛି, ଆଜି କପରି ସେମାନଙ୍କ ଆଗରେ କହିବି ଯେ ଦୁନିଆରେ ମଣିଷ ଠାରୁ ଟଙ୍କା ବଡ଼ !

ସବୁ ବୁଝିଛି, କିନ୍ତୁ ମୋର ସେହି ସୁଧଖୋର ମହାଜନ ଠାରୁ ଉଦ୍ଧାର ପାଇବାର ଅନ୍ୟ କିଛି ବାଟ ନ ଥିଲା । କଥାଟା ଆଉ ଲୁଚାଇ ରଖିବାକୁ ମୁଁ ଚାହେଁ ନାହିଁ । ଟମ ଓ ହାରିକୁ ବିକ୍ରୀର ଦଲିଲଟା ଏବେଣି ହାଲିର ହାତରେ ରହିଛି । ସେ କାଲି ସକାଳେ ଆସି ଦୁହିଁଙ୍କୁ ନେଇଯିବ । ତାହା ଆଗରୁ ମୁଁ ଏଠାରୁ ଖସିଯିବି । ତୁମେ ବି ଏଲିଜାକୁ ନେଇ କୁଆଡ଼େ ଚାଲି ଯାଅ ।

ମାତ୍ର ଶ୍ରୀମତୀ ଶେଲବୀ ସେଥିରେ ରାଜି ହେଲେ ନାହିଁ ।

ଏଲିଜା ପାଖ ସାନ ଘରଟିର ଦରଜାରେ କାନ ପାତି ସେମାନଙ୍କର କଥୋପକଥନ ଶୁଣୁଥିଲା । ଭୟ, ଦୁଃଖ ଓ ଅପମାନରେ ତାହାର ମୁହଁ ଓ ଆଖିର ଚେହେରା ବଦଳି ଗଲା । ସଙ୍ଗେ ସଙ୍ଗେ ସେ ନିଜ କୋଠରୀକୁ ଧାଇଁଗଲା । ହାରି ଧୋବ ଫର ଫର ବିଛଣାରେ ଶୋଇଥିଲା । ଏଲିଜା ତାହା ଆଡ଼କୁ ଅନାଇ ମୁଖରେ ଦୃଢ଼ତା ପ୍ରକାଶ କରି ଖଣ୍ଡିଏ କାଗଜରେ ଶ୍ରୀମତୀ ଶେଲବୀକୁ ଲେଖିଲା — ଆପଣମାନଙ୍କର କଥାବାର୍ତ୍ତା ମୁଁ ସବୁ ଶୁଣିଛି । ମୋ ପିଲାଟିକୁ ମୁଁ ଯେ କୌଣସି ମତେ ରକ୍ଷା କରିବି । ସେଥି ପାଇଁ ମୋର ଦୋଷ ଧରିବେ ନାହିଁ । ଆପଣଙ୍କର ଦୟା ଭୁଲି ହେବ ନାହିଁ । ମୋତେ କଦାପି କୃତଘ୍ନ ବୋଲି ଭାବିବେ ନାହିଁ । ଭଗବାନ ଆପଣମାନଙ୍କର ମଙ୍ଗଳ କରନ୍ତୁ ।

ସେ କାଗଜ ଖଣ୍ଡିକ ଚଉକାଠ ଗୋଟିଏ ପାଖରେ ରଖି ଦେଲା । ତା ପରେ ସେ ହାରିର କେତେ ଖଣ୍ଡ ଜାମାପଟା ଓ ଖେଳଣାକୁ ଖଣ୍ଡିଏ

ବଡ଼ ରୁମାଲରେ ବାନ୍ଧିଲା, ହାରିକୁ ଉଠାଇଲା ଏବଂ ତାହାକୁ କାନ୍ଧେଇ ଚୁପି ଚୁପି ଘରୁ ବାହାରିଗଲା ।

ଶୀତ ରାତ୍ର । ଆକାଶରେ ଉଜ୍ଜ୍ୱଳ ତାରାସବୁ ଝଟକୁଥିଲେ । ଏଲଜା ଝେମର କୁଟୀର ଦୁଆରରେ ଧୀରେ ଧୀରେ ଧକ୍କା ମାରିଲା । ଝେମର ସ୍ତ୍ରୀ ହାତରେ ମହମବତ୍ତି ଧରି କବାଟ ଫିଟାଇଦେଲା ।

ଏଲଜା ତତ୍‌କ୍ଷଣାତ କହି ପକାଇଲା— ମୋ ମୁନିବ ହାରି ଓ ଝେମ ଜକାଙ୍କୁ ବିକି ଦେଇଛନ୍ତି । ଦାସ ବ୍ୟବସାୟୀ ସକାଳେ ଆସି ଦୁହିଁଙ୍କୁ ନେଇ ଯିବ । ସେଥି ପାଇଁ ମୁଁ ମୋ ପୁଅଟିକୁ ନେଇ ଏବେ ପଳାଇ ଯାଉଛି ।

ଏହା ଶୁଣି ଝେମ ଅବଶ ହୋଇ ମୁଣ୍ଡରେ ହାତ ଦେଇ ଚଉକରେ ବସି ପଡ଼ିଲା । ତାହାର ସ୍ତ୍ରୀ ପରାମର୍ଶ ଦେଲା — ତୁମେ ବି ଏଲଜା ସଂଗରେ ପଳାଅ । ନୋହିଲେ ସେ ତୁମକୁ ଦକ୍ଷିଣ ମୁଲକକୁ ନେଇ ଖଟାଇ ଖଟାଇ ମାରି ଦେବ ।

ଝେମ ମଥା ଟେକି କହିଲା — ନା, ତାହା ହୋଇ ପାରିବ ନାହିଁ । ମୋତେ ନ ବିକିଥିଲେ ମୁନିବକୁ ଶେଷରେ ଘରଦ୍ୱାର ସବୁ ବିକି ଭୁଆଡ଼େ ଗୁଲିଯିବାକୁ ହୋଇ ଥାଆନ୍ତା । ତାହାର କିଛି ଦୋଷ ନାହିଁ । ଆଖିର ଲୁହରେ ଝେମର ସ୍ୱର ବନ୍ଦ ହୋଇଗଲା । ସେ ତାହାର ଶୋଇଲା ପୁଅଝିଅଙ୍କୁ ଅନାଇ ଦୁଇ ହାତରେ ମୁହଁ ଢାଙ୍କି ଭେ ଭେ କାନ୍ଦିବାକୁ ଲାଗିଲା ।

ଏଲଜା ପିଲାଟିକୁ ଧରି ଆଖିରୁ ଲୁହ ପୋଛି ପୋଛି ରାତିର ଅନ୍ଧାରରେ ମିଳାଇଗଲା ।

ପର ଦିନ ସକାଳେ ଶେଲବୀର ଘରେ ଏଲଜାକୁ ନ ଦେଖିବାରୁ, ହାଲି ରାଗରେ ଲାଲ ପଡ଼ଯାଇ ଘୋଡ଼ାରେ ଚଢ଼ି ଦୁଇ ଜଣ ଭୃତ୍ୟଙ୍କୁ ସାଙ୍ଗରେ ଧରି ତାହାକୁ ଖୋଜିବା ପାଇଁ ବାହାରିଲା ।

ସେତେ ବେଳକୁ ଏଲିଜା ଗୃହ ସାରୁ ଗୃହ ଗୃହ କେତେ ମାଇଲ ଦୂରକୁ ପଳାଇ ଯାଇଥିଲା । କ୍ଲାନ୍ତ ଓ ଅବସନ୍ନ ହୋଇ ମାଆ ଓ ପୁଅ ଦ୍ୱିପହରେ ଜଣେ ଚାଷୀର ଘରେ ଯାଇ ପହଞ୍ଚିଲେ । ସେଠାରେ ଖିଆପିଆ ଓ ଟିକିଏ ବିଶ୍ରାମ କରି ଏଲିଜା ପୁଣି ଚାଲିଲା । ସଞ୍ଜ ଆଗରୁ ସେ ଓହିଓ ନଦୀ କୂଳରେ ଗୋଟିଏ ସରାଇଖାନାରେ ହାଜର ହେଲା । ପିଲାଟିକୁ ଶୁଆଇ ଦେଇ ସେ ଝରକା ବାଟେ ନଦୀର ଭୟଙ୍କର ସୁଅ ଆଡ଼କୁ ଅନାଇ ଅଶାନ୍ତ ମନରେ ନାନା ଚିନ୍ତାରେ ବୁଡ଼ିଗଲା ।

ତିନି ଜଣଙ୍କୁ ଘୋଡ଼ା ଛୁଟାଇ ସରାଇଖାନାର ଫାଟକ ଆଡ଼କୁ ଆସୁଥିବାର ଦେଖିପାରି ଏଲିଜା କାଳ ବିଳମ୍ବ ନ କରି ଶୋଇଲା ପୁଅଟିକୁ କାନ୍ଧରେ ପକାଇ ଚୁପ୍‌ଚାପ୍ ପଛ ଘରର ଦରଜା ବାଟେ ନଦୀ କୂଳକୁ ଦ୍ରୁତ ଧାଇଁ ପଳାଇଲା । ହାଲି ତାହାକୁ ଦେଖିଲା ମାତ୍ରେ ଜୋରରେ ଚିତ୍କାର କଲା ଏବଂ ଘୋଡ଼ାରୁ ଓହ୍ଲାଇ ତାହା ପଛରେ ଦୌଡ଼ିଲା । ଏଲିଜା ଭୟରେ ରଡ଼ି କରି ସାମନାରେ ଗୋଟିଏ ଭାସମାନ ବରଫ ଖଣ୍ଡ ଉପରକୁ କୁଦି ପଡ଼ିଲା । ସେଠା ହଠାତ୍ ଦୂରି ଯିବାରୁ ସେ ଖଣ୍ଡିକ ପରେ ଖଣ୍ଡିଏ ବରଫ ଉପରକୁ ଡେଇଁ ଡେଇଁ ଆରପାରି ଆଡ଼କୁ ଆଗେଇବାକୁ ଲାଗିଲା । ବରଫରେ ତାହାର ପାଦ କଟି ଯାଇ ରକ୍ତ ବାହାରିଲା ଏବଂ ଦେହ ଅଚଳ ହୋଇଗଲା । ଏତିକି ବେଳେ ଜଣେ ଲୋକ ତାହାକୁ ପାଣିରୁ ଟେକି ନେଇ କୂଳ ଉପରେ ଶୁଆଇ ଦେଲା ଏବଂ କହିଲା— ତୁ ତ ଖୁବ୍ ସାହସୀ ଝିଅ !

ଏଲିଜାର ଚେତା ଫେରିଲାରୁ, ସେ ଲୋକଟିକୁ ଚିହ୍ନି ପାରି ଅନୁନୟ କଲା— ସାଇମସ୍, ମୋତେ ବଞ୍ଚାଅ, କେଉଁଠି ହେଲେ ଲୁଚାଇ ରଖ ! ମୋ ମୁନିବ ମୋ ପୁଅଟିକୁ ବିକି ଦେଇଛି ।

ସାଇମସ କହିଲା— ତୋତେ ଲୁଚାଇ ରଖିଲା ଭଳି ଜାଗା ତ ମୋର ନାହିଁ । ବରଂ ତୁ ଦୂରରେ ସେହି ଯେଉଁ ଘରଟା ଦିଶୁଛି ସେଠାକୁ ଚାଲି ଯାଆ । ସେମାନେ ଭଲ ଲୋକ, ତୋତେ ନିଶ୍ଚୟ ଆଶ୍ରୟ ଦେବେ ।

ତହୁଁ ଏଲିଜା ପୁଅଟିକୁ କାଖେଇ ସେହି ଘର ଆଡ଼କୁ ଅଗ୍ରସର ହେଲା । ଏତେଣେ ହାଲି ମନେ ମନେ ଏଲିଜାକୁ ଗାଳି ଦେଇ ଦେଇ ସରାଇଖାନାକୁ ଗଲା ଏବଂ ସେଠାରେ ଜଣେ ଗୁଣ୍ଡା ସର୍ଦ୍ଦାର ସହିତ ପରାମର୍ଶ କରି ସ୍ଥିର କଲା, ଏଲିଜା ଓ ତାହାର ପୁଅକୁ ଧରି ଆଣିଲେ ସେ ତାହାକୁ ଶହେ ଡଲାର ବକ୍‌ସିସ ଦେବ ।

ଏଲିଜା ସେହି ଘର ପାଖରେ ପହଞ୍ଚିଲା ବେଳକୁ ରାତି ହୋଇ ଯାଇଥିଲା । କନକନିଆ ହେମାଳ ପବନ ବୋହୁଥିଲା । ଘରର ମାଲିକ ବାର୍ଡ଼ ଯୁକ୍ତରାଷ୍ଟ୍ର ଆମେରିକା ସିନେଟର ଜଣେ ସଦସ୍ୟ । ଏଲିଜା ଓ ତାହାର ପୁଅ ପାଇଁ ରହିବାର ବ୍ୟବସ୍ଥା କରି ସାରି ସେ ନିଜର ସ୍ତ୍ରୀକୁ କହିଲା— ଆଜି ରାତି ଭିତରେ ଏହାକୁ ଏଠାରୁ ଖସାଇ ଦେବାକୁ ହେବ । କାରଣ କାଲି ସେହି ଲୋକଟି ନିଶ୍ଚୟ ଏହାକୁ ଖୋଜି ଖୋଜି ଏଠାକୁ ଆସିବ । ମୋର ଜଣେ ମହକିଲ ଏଠାରୁ ସାତ ମାଇଲ ଦୂରରେ ପାହାଡ଼ ଆଉ ଘଞ୍ଚ ଜଙ୍ଗଲ ଭିତରେ କିଛି ଜମି କିଣି ରହିଛି । ସ୍ତ୍ରୀ ଲୋକଟିକୁ ନେଇ ସେଠାରେ ଛାଡ଼ି ଦେଇ ଆସିଲେ ଆଉ କିଛି ଭୟ ନ ଥିବ । ମାତ୍ର ସେଠାକୁ ରାସ୍ତା ଏତେ ଦୁର୍ଗମ ଓ ଭୟଙ୍କର ଯେ ମୋ ଛଡ଼ା ଅନ୍ୟ କେହି ସେଠାକୁ ଗାଡ଼ି ଚଳାଇ ଯାଇ ପାରିବ ନାହିଁ । ରାତି ବାରଟାରେ ମୁଁ ତାହାକୁ ଖୁବ୍ ଗୋପନରେ ନେଇଯିବି ଏବଂ ସେଠାରେ ଚୁପଚାପ ଛାଡ଼ି ଦେଇ ଅନ୍ୟ ବାଟରେ ଘରକୁ ଫେରି ଆସିବି ।

ବାର୍ଡ଼ ନିର୍ଦ୍ଦିଷ୍ଟ ସମୟରେ ଏଲିଜା ଓ ତାହାର ପୁଅକୁ ନେଇ ଅତି ସାବଧାନରେ ଗାଡ଼ି ଚଳାଇ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲେ ଏବଂ ଜନ ୱାନ୍ ଟ୍ରମ୍‌କୁ କହିଲେ— ଆପଣ ଏମାନଙ୍କୁ ରକ୍ଷା କରନ୍ତୁ, ଧରିବା ଲାଗି ନିଶ୍ଚୟ ଲୋକ ଆସି ପହଞ୍ଚିବେ ।

ସେଥି ପାଇଁ ମୁଁ ବରାବର ପ୍ରସ୍ତୁତ ଥିବି, ମୋର ସାତୋଟି ବଳିଷ୍ଠ ପୁଅ ଅଛନ୍ତି— ଟ୍ରମ୍ ଦୃଢ଼ ସ୍ୱରରେ ଜବାବ ଦେଲେ ।

୩

ରାତି ପାହିଲା । ଆକାଶ ମେଘାଚ୍ଛନ୍ନ । ଟମର ସ୍ତ୍ରୀ ତାହାର ଲୁଗାପଟା ସବୁ ବନ୍ଧାବନ୍ଧି କଲା । ତାହାର ପିଲାଏ ଶୋଇଥିଲେ । ଟମ ବିଛଣା ପାଖକୁ ଯାଇ ସେମାନଙ୍କୁ ଚୁମ୍ବନ ଦେଲା ମାତ୍ରେ ତାହାର କୋହ ଉଠିଲା— ଏହି ମୋର ଶେଷ ଦେଖା ! ସେ ସ୍ତ୍ରୀକୁ ସାନ୍ତ୍ୱନା ଦେଲା, ଖାଇବାକୁ ବସିଲାରୁ ତାହାର ପାଟିକୁ ହାତ ଗଲା ନାହିଁ । ଶ୍ରୀମତୀ ଶେଲବୀ ଆସି କାନ୍ଦି କାନ୍ଦି କହିଲେ— ଟମ୍, ଭଗବାନଙ୍କୁ ସାକ୍ଷୀ ରଖି କହୁଛି, ଆମ ଅବସ୍ଥା ଭଲ ହେଲେ ତୁମକୁ ନିଶ୍ଚୟ ଫେରାଇ ଆଣିବି । ଟମ୍ ଓ ତାହାର ସ୍ତ୍ରୀ ମଧ୍ୟ କାନ୍ଦି କାଟି ମଥା ଫଟାଇଲେ ।

ହାଲି ଗାଡ଼ି ନେଇ ପହଞ୍ଚିଲା । ଟମ ଗାଡ଼ିରେ ବସିଲାରୁ, ହାଲି ଆସନ ତଳୁ ଯୋଡ଼ାଏ ଲୁହା ଶିକୁଳି କାଢ଼ି ଟମର ପାଦରେ ବାନ୍ଧି ଦେଲା । ଏହା ଦେଖି ଶ୍ରୀମତୀ ଶେଲବୀ କହିଲେ— ଏତେ ସାବଧାନ ହେବାର କିଛି ଦରକାର ନାହିଁ ।

ଗାଡ଼ି ଯାଇ କମାରଶାଳ ପାଖରେ ଅଟକିଲା । ହାଲି ଯୋଡ଼ାଏ ହାତକଡ଼ି କାଢ଼ି କମାରକୁ ଦେଲା ଟିକିଏ ବଡ଼ କରିଦେବା ପାଇଁ ।

କହନ୍ତି କମାର ଟମଙ୍କୁ ଦେଖି ଅବାକ ହୋଇ କହିଲା— ତାହା ପରି ଏତେ ଭଲ ଲୋକକୁ ହାତକଡ଼ି ପିନ୍ଧାଇବାକୁ ପଡ଼ିବ ନାହିଁ।

ଟମ ମୁହଁ ଓହଳାଇ ବସିଥିଲେ। ହଠାତ୍ ବାଳକ ଜର୍ଜ ଧାଇଁ ଆସି ଟମଙ୍କୁ କୁଣ୍ଢାଇ ପକାଇ କାନ୍ଦି କାନ୍ଦି କହିଲା— ମୁଁ ବଡ଼ ହୋଇଥିଲେ ଏମିତି ନୀଚ କାମ କରି ପାରି ନ ଥାଆନ୍ତେ। ଟମର ପାଦରେ ବେଡ଼ି ଦେଖି ଜର୍ଜ ରାଗିଗଲା ଏବଂ ତାହାର ବେକରେ ସୂତାରେ ବନ୍ଧା ଗୋଟାଏ ଡଲାର ବୁଲାଇ ବାନ୍ଧିଦେଇ କହିଲା— ଏହାକୁ ଦେଖିଲେ ତୁମର ମନେ ପଡ଼ିବ ଯେ ଦିନେ ନା ଦିନେ ମୁଁ ତୁମକୁ ଫେରାଇ ଆଣିବ।

ହାଲି ହାତକଡ଼ି ନେଇ ଆସିଲା। ଜର୍ଜ ତାହାଙ୍କୁ କହିଲା— ଆପଣ ସାରା ଜୀବନ ଏହି ଦାସ ବ୍ୟବସାୟ କରୁଛନ୍ତି, ଲାଜ ମାଡ଼ୁ ନାହିଁ! ମୁଁ କଦାପି ଜୀବନରେ ଏପରି କଦର୍ଯ୍ୟ କାମ କରି ପାରିବି ନାହିଁ। ବିଦାୟ, ଟମ କକା।

ବିଦାୟ, ଜର୍ଜ, ଭଗବାନ ତୁମର ମଙ୍ଗଳ କରନ୍ତୁ— ଟମର କଣ୍ଠରୁ ଶେଷ ବାଣୀ ନିର୍ଗତ ହେଲା।

ଜର୍ଜ ଘୋଡ଼ା ଛୁଟାଇଦେଲା ସଙ୍ଗେ ସଙ୍ଗେ ଟମର ଶେଷ ଚିହ୍ନଟି ଅପସରିଗଲା। ବାଳକ ଜର୍ଜ ତାହାର ଗ୍ରୀବା ଉପରେ କୁନି ହାତ ଦୁଇଟିରେ ଯେଉଁଠି ଡଲାରଟା ବାନ୍ଧି ଦେଇଥିଲା, ଟମ ସେଠା ଚାପି ଧରିଲା। ହାଲିର ଗାଡ଼ି ତାହାକୁ ନେଇ ଦୂରକୁ ଗଡ଼ି ଚାଲିଲା।

ସଞ୍ଜ ବେଳେ ହାଲିର ଗାଡ଼ି ୱାଶିଙ୍ଗଟନ ନଗରୀରେ ପହଞ୍ଚିଲା। ଟମ ରହିଲା ଜେଲଖାନାରେ, ଆଉ ହାଲି ହୋଟେଲରେ।

ପର ଦିନ ଏଗାରଟା ବେଳେ ହାଲି ହାଟକୁ ଯାଇ ଛଅ ଜଣ କ୍ରୀତଦାସ-ଦାସୀ କିଣି ସେମାନଙ୍କୁ ହାତକଡ଼ି ପିନ୍ଧାଇ ଲୁହା

ଶିକୁଳିରେ ବାନ୍ଧି ଗୋରୁ ପଲ ପରି ଅଡ଼ାଇ ନେଇ ଆସିଲି । ତହିଁ ପର ଦିନ ସେ ସମସ୍ତଙ୍କୁ ନେଇ ଓହିଓ ନଦୀରେ ଯାତାୟାତକାରୀ ବଡ଼ ଷ୍ଟିମାରରେ ଉଠିଲା । ସେଥିରେ ଆହୁରି କେତେକ ଦାସ ବ୍ୟବସାୟୀ ସେମାନଙ୍କର ମଣିଷ-ପଣ୍ୟ ନେଇ ଦକ୍ଷିଣ ଅଞ୍ଚଳରେ ବିକିବାକୁ ଯାଉଥିଲେ । ପଣ୍ୟଗୁଡ଼ିକ ତଳ ଡେକ୍‌ରେ ମାଲପତ୍ର ସାଙ୍ଗରେ ଲଦା ହୋଇଥିଲା । ଉପର ଡେକ୍‌ରେ ଗୋରା ଲୋକମାନେ ମହା ଆରାମରେ ବସିଥିଲେ । ନଦୀର ଦୁଇ ପାର୍ଶ୍ୱରେ ଅତ୍ୟନ୍ତ ମନୋରମ ଦୃଶ୍ୟ ଭିତରେ ଷ୍ଟିମାର ଗଡ଼ୁଥିଲା । ଦାସଦାସୀଙ୍କର ଆଖିରୁ ଅନବରତ ଲୁହ ଝରୁଥିଲା ।

ଅବଶେଷରେ ଷ୍ଟିମାର କେଣ୍ଟକି ପ୍ରଦେଶର ଗୋଟିଏ ଛୋଟ ଷ୍ଟେସନ୍‌ରେ ଯାଇ ରହିଲା । ଜଣେ କ୍ରୀତଦାସୀ ଛୋଟ ପିଲାଟିକୁ କାଖେଇ ଉପରକୁ ଉଠି ଆସି ନିଗ୍ରୋ ଦାସଦାସୀଙ୍କ ପାଖରେ ବସିଲା । ଜଣେ ଗୋରା ଭଦ୍ରଲୋକ ପିଲାଟିର ହାତରେ ଖଣ୍ଡେ ମିଶ୍ରୀ ଧରାଇ ଦେଲାରୁ, ସେ ଭାରି ଆନନ୍ଦରେ ସେଟା ଚୋଷିବାକୁ ଲାଗିଲା । ତାହାର ମାଆର ଅଜାଣତରେ ହାଲି କେଉଁ ଛଟକରେ ସେହି ଦୁଧଖିଆ ପିଲାଟିକୁ ଭଦ୍ର ଲୋକକୁ ବିକି ଦେଲା !

ଷ୍ଟିମାର ଲୁଇଭିଲରେ ସନ୍ଧ୍ୟାରେ ପହଞ୍ଚିଲା । ଏଠାରେ ସେହି କ୍ରୀତଦାସୀର ସ୍ୱାମୀ ଗୋଟିଏ ସରାଇଖାନାରେ କାମ କରେ ବୋଲି ସେ ପିଲାଟିକୁ ଖଣ୍ଡିଏ ଜାମା ଉପରେ ଶୁଆଇ ଦେଇ ରେଲିଂ ପାଖକୁ ଉଠି ଯାଇ ତାହାର ସ୍ୱାମୀକୁ ଖୋଜିବାକୁ ଲାଗିଲା । ଏହି ଅବସରରେ ହାଲି ଶୋଇଲା ପିଲାଟିକୁ ଟେକି ନେଇ ସେହି ବ୍ୟବସାୟୀର ହାତକୁ ବଢ଼ାଇ ଦେଇ କହିଲା— ଏତିକି ବେଳେ ଖସିଯାଅ । ହୁସିଆର, ପିଲାଟିର ନିଦ ଯେମିତି ନ ଭାଙ୍ଗେ ।

ବ୍ୟବସାୟୀ ପିଲାଟିକୁ ପୁଟୁଳି ପରି ଧରି ଯାତ୍ରୀମାନଙ୍କ ଭିଡ଼ରେ ମିଶି ଯାଇ ଘାଟରେ ଓହ୍ଲାଇଗଲା । ଷ୍ଟିମାର ଛାଡ଼ି ଦେଲା । ଚାରିଆଡ଼େ ଅନ୍ଧାର । ସ୍ତ୍ରୀ ଲୋକଟି ସ୍ୱାମୀକୁ ନ ପାଇଁ ହତାଶରେ ଫେରି ଆସି ନିଜ ଜାଗାରେ ବସିପଡ଼ି ଦେଖିଲା, ତାହାର ପିଲାଟି ନାହିଁ । ତହୁଁ ସେ ଭୟ, ବେଦନା ଓ ବିସ୍ମୟରେ ଚିତ୍କାର କଲା ମୋ ପିଲାଟିକୁ କିଏ ନେଇଗଲା

ହାଲି ଜବାବ ଦେଲା— ଲୁସି, ତୁମେ ଯାଉଛ ଦକ୍ଷିଣ ଅଞ୍ଚଳର ଦାସ ହାଟକୁ । ତୁମ ପିଲାଟିକୁ ସେଠାକୁ ନ ନେଇ ଜଣେ ଭଦ୍ରଲୋକକୁ ବିକି ଦେଲି ।

ଲୁସିର ଆଖିରୁ ଲୁହ ଗଡ଼ିଲା ନାହିଁ କି ତୁଣ୍ଡରୁ ପଦିଏ କଥା ବାହାରିଲା ନାହିଁ । ସେ ମୂକ ଓ ଅଚଳ ହୋଇ ବସି ରହିଲା । ଟମ ସମସ୍ତ ଘଟଣା ଦେଖି କାନ୍ଦି କାନ୍ଦି ଲୁସିକୁ ସାନ୍ତ୍ୱନା ଦେବାକୁ ଲାଗିଲା । ତାହାର କଥା ଶୁଣି ଲୁସିର ଅନ୍ତର ହାହାକାର କଲା । ରାତିରେ ଯାତ୍ରୀମାନେ ଖାଇ ପିଇ ଶୋଇ ପଡ଼ିଲେ । ଟମ ମଧ୍ୟ ଗୋଟିଏ କାଠ ବାକ୍ସ ଉପରେ ତାହାର ଶରୀରକୁ ଲମ୍ବାଇ ଦେଲା ।

ଗଭୀର ରାତିରେ ହଠାତ୍ ଟମର ନିଦ ଭାଙ୍ଗି ଗଲା । ସେ ଅସ୍ପଷ୍ଟ ଆଲୁଅରେ ଦେଖିଲା, କଳା ପରି ଗୋଟାଏ କଅଣ ତାହା ପାଖ ଦେଇ ଚାଲି ଗଲା, ଆଉ ତା ପରେ ପାଣିରେ ଝପ୍ କରି ଗୋଟାଏ ଶବ୍ଦ ହେଲା । ସେ ମଥା ଟେକିଲା, ଲୁସିର୍ ଜାଗାଟା ଖାଲି । ତହୁଁ ସେ ସବୁ କଥା ବୁଝି ପାରିଲା ।

ରାତି ପାହିଲା । ହାଲିର ନିଦ ଭାଙ୍ଗିଲା । ସଙ୍ଗେ ସଙ୍ଗେ ସେ ନିଜର ମାଲପତ୍ର ତଦାରଖ କରୁଁ କରୁଁ ଦେଖିଲା, ଗୋଟିଏ ପଣ୍ୟ ଗାଏବ । ତହୁଁ ସେ ଟମକୁ ପଚାରିଲା— ଲୁସି କୁଆଡ଼େ ଗଲା ?

ଟମ ଜବାବ ଦେଲା— ଜାଣେ ନା ।

ତା ପରେ ହାଲ ଷ୍ଟିମାରରର ଚରି ଆଡ଼େ ତାହାକୁ ଖୋଜ ନ ପାଇବାରୁ, ଫେରି ଆସି ପୁଣି ଟମକୁ କହିଲା— ତୁମେ ସବୁ ଜାଣ, ସତ କଥା କୁହ ।

ଟମ ଜଣାଇଲା— ହଜୁର, ପାହାନ୍ତା ପହରରେ କାହାକୁ ଯେମିତି ମୋ ପାଖ ଦେଇ ଚାଲିଯିବାର ଦେଖିଲି । ସେତେ ବେଳେ ମୋତେ ନିଦ ଘାରିଥିଲା । ତା ପରେ ପାଣିରେ ପଡ଼ିବାର ଶବ୍ଦ ଶୁଣି ଉଠି ପଡ଼ି ଦେଖେଁ ତ ଲୁସି ନାହିଁ ।

ହାଲ ଜାମାର ପକେଟରୁ ଟିପା ଖାତା ବାହାର କରି ଲୁସିର ନାମ ପାଖରେ ଲେଖିଲା ଲୋକସାନ । ଏଥି ପାଇଁ ତାହାର ମନରେ ଟିକିଏ ଅଶାନ୍ତି ଓ ଦୁଃଖ ଦେଖା ଦେଲା ।

ଷ୍ଟିମାର ଓହିଓ ନଦୀରୁ ଆସି ଯୁକ୍ତ ରାଷ୍ଟ୍ରର ଦୀର୍ଘତମ ନଦୀ ମିସିସିପିରେ ପଡ଼ିଲା । ଷ୍ଟିମାର ତାହାର କୂଳେ କୂଳେ ଧାଇଁ ଚାଲିଲା ।

ସୂର୍ଯ୍ୟାସ୍ତ । ଟମ ଗୋଟିଏ ତୁଳା ଗାଣ୍ଠି ଉପରେ ବସି ବାଇବେଲ ପଢୁଥିଲା ଏବଂ କୂଳର ମନୋରମ ଦୃଶ୍ୟରାଜିକୁ ଅନାଇ ନିଜ ଜୀବନର ସୁଖ ଦୁଃଖର କଥା ଭାବୁଥିଲା ।

ଷ୍ଟିମାରରେ ସେଣ୍ଟ କ୍ଲେୟାର ନାମକ ଜଣେ ଭଦ୍ରଲୋକ ତାହାର ଦଶ ବର୍ଷର ଏକମାତ୍ର ଝିଅ ଇଭା ଓ ଜଣେ ଆତ୍ମୀୟା ସହିତ ନିଉ ଅରଲିୟନ୍‌ସକୁ ଯାଉଥିଲା । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦରୀ । ସମସ୍ତେ ତାହାକୁ ଆଦର ସୋହାଗ କରୁଥିଲେ । ବେଳେ ବେଳେ ସେ ଟମ ପାଖରେ ଯାଇ ବସୁଥିଲା । ଟମ ସହିତ ତାହାର ଖୁବ୍ ଭାବ ହୋଇଗଲା ।

ଇଭା ପଚାରିଲା— ଟମ କକା, ତୁମେ କୁଆଡ଼େ ଯାଉଛ ?

ଟମ ଜବାବ ଦେଲା— ମୁନିବ ମୋତେ କେଉଁଠାକୁ ବିକିବାକୁ ନେଇ ଯାଉଛନ୍ତି କହି ପାରିବି ନାହିଁ ।

ଆଜି ମୋ ବାବାଙ୍କୁ କହିବି, ସେ ତୁମକୁ କିଣି ନେବେ, ତୁମେ ଆମ ଘରେ ଖୁବ୍ ଖୁସିରେ ରହିବ— ଇଭା କହିଲା ।

ହେଉ, ଧନ୍ୟବାଦ— ଟମର ତୁଣ୍ଡରୁ ବାହାରିଲା ।

ଷ୍ଟିମାର ଗୋଟିଏ ଷ୍ଟେସନରେ ଅଟକିଲା । କର୍ମଚାରୀମାନେ କାଠ ଗଡ଼ସବୁ ଉଠାଇବାକୁ ଲାଗିଲେ । ଇଭା ତାହାର ବାବା ପାଖରେ ଉପର ଡେକ୍‌ରେ ଠିଆ ହୋଇ ରେଲିଂ କଡ଼ରେ ନଇଁ ପଡ଼ି କାଠ ଉଠାଇବା ଦେଖୁଥିଲା । ଷ୍ଟିମାର ଛାଡ଼ିଲା ବେଳେ ତାହାର ପ୍ରକାଣ୍ଡ ଚକ ପାଣିରେ ଘୂରିଲା ସମୟରେ ଇଭା ଟାଳ ସମ୍ଭାଳି ନ ପାରି ନଦୀରେ ଖସି ପଡ଼ିଲା । ସଙ୍ଗେ ସଙ୍ଗେ ଟମ ପାଣିକୁ ଡେଇଁ ପଡ଼ି ଅଚେତ ଝିଅଟିକୁ ମୁଣ୍ଡ ଉପରେ ଟେକିଧରି ପହଁରି ପହଁରି ଷ୍ଟିମାର ପାଖକୁ ଆସିଲା । ତା ପରେ ସମସ୍ତେ ଇଭାକୁ ଷ୍ଟିମାର ଉପରକୁ ଉଠାଇ ଆଣିଲେ । ଟମ ବି ଉଠି ଆସିଲା । ପର ଦିନ ଇଭା ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଘୂରି ବୁଲିଲା ।

ନାଉଁ ଅରଲିୟନସ ପାଖେଇ ଆସିଲା । ଏହି ସହରରେ ଦାସ ବ୍ୟବସାୟର ମସ୍ତ ବଡ଼ ହାଟ । ଇତି ମଧ୍ୟରେ ସେଣ୍ଟ କ୍ଲେୟାର ଦାସ ବ୍ୟବସାୟୀ ହାଲି ସାଙ୍ଗରେ ଦର କଷାକଷି କରି ଟମକୁ କିଣି ନେଲା । ଟମ ନିଜର ନୂତନ ପ୍ରିୟଦର୍ଶନ ସଦାନନ୍ଦ ମୁନିବଙ୍କୁ କୃତଜ୍ଞତା ଜଣାଇଲା— ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ ।

ମୁନିବ କହିଲା— ମୁଁ ବି ସେୟା ଆଶା କରେଁ । ତୁମେ ଯଦି ଘୋଡ଼ା ଗାଡ଼ି ଚଳାଇ ପାରି, ମୁଁ ତୁମକୁ ସେହି କାମ ଦେବି । ମୋର ବିଶ୍ୱାସ, ତୁମେ ବୋଧ ହୁଏ ମଦ ଖାଅ ନାହିଁ ।

ସେହି ଦିନରୁ ଟମର ନୂତନ ଜୀବନ ଆରମ୍ଭ ହେଲା ।

୪

ଘନ ଟ୍ରୋମ ପଳାତକ ନିଗ୍ରୋ ଦାସଦାସୀମାନଙ୍କ ଲାଗି ନିବିଡ଼ ଜଙ୍ଗଲ ଭିତରେ ଗୋଟିଏ ଆଶ୍ରୟ ସ୍ଥଳୀ ତିଆରି କରିଥିଲା । ଜର୍ଜ ଛଦ୍ମ ବେଶରେ ଜିମକୁ ନେଇ ସରାଇଖାନାରୁ ସେଠାକୁ ଲୁଚି ପଳାଇ ଆସିଥିଲା । ମାତ୍ର ସେ ସେଠାରେ ବେଶି ସମୟ ନ ରହି ଘନ ଟ୍ରୋମର ଘରକୁ ଆସିବାରୁ, ଆଶାତୀତ ଭାବରେ ସ୍ତ୍ରୀ ଏଲିଜା ଓ ପୁଅ ହାରି ସହିତ ତାହାର ମିଳନ ହେଲା । ଶତ୍ରୁର ଅତର୍କିତ ଆକ୍ରମଣର ଆଶଙ୍କାରେ ଟ୍ରୋମ ସେମାନଙ୍କୁ ଯଥା ଶୀଘ୍ର ଯୁକ୍ତ ରାଷ୍ଟ୍ରର ସୀମାନ୍ତ ଟପାଇ ଦେବା ପାଇଁ ତତ୍ପର ହେଲା ।

ଅନ୍ଧାର ରାତି । ଭୋଜନ ପରେ ଏଲିଜା ହାରିକୁ ନେଇ ଗାଡ଼ିରେ ବସିଲା । ତାହା ପଛେ ପଛେ ନିଗ୍ରୋ ପିଲାଟିର ବୁଢ଼ୀ ମାଆ ଉଠିଲା । ଜର୍ଜ ପାଖରେ ଦୁଇଟା ପିସ୍ତଲ ଥିଲା । ବାକି ସମସ୍ତେ ଟ୍ରୋମ ଦମ୍ପତିଙ୍କୁ ବିଦାୟ ଜଣାଇ ଗାଡ଼ିରେ ଚଢ଼ିଲେ । ବଣ ଭିତରେ ପଥୁରିଆ ରାସ୍ତାରେ ଚାଳକ ଖୁବ୍ ସାବଧାନରେ ଗାଡ଼ି ଚଳାଇବାକୁ ଲାଗିଲା ।

ପ୍ରାୟ ରାତି ତିନିଟା ବେଳେ ଜର୍ଜର କାନରେ ଘୋଡ଼ା ଟାପୁର ଶବ୍ଦ ପଡ଼ିଲା କ୍ଷଣି, ସେ କହୁଣିରେ ଚାଳକକୁ ଭୁଷି ଦେଇ କହିଲା—ବୋଧ ହୁଏ ମାଇକେଲ । ସେ ତୀକ୍ଷ୍ଣ ଦୃଷ୍ଟିରେ ପଛକୁ ଅନାଇ ଦେଖିଲା, କିଛି ଦୂରରେ ଗୋଟାଏ ଉଠାଣି ଉପରେ ଜଣେ ଲୋକ ଦ୍ରୁତ ଗତିରେ ଘୋଡ଼ା ଛୁଟାଇ ଆସୁଛି । ଜର୍ଜ ଓ ଜିମ ତତ୍କ୍ଷଣାତ

ଗାଡ଼ିରୁ ଓହ୍ଲାଇ ପଛରେ ଠିଆ ହୋଇ ଲୋକଟିକୁ ଅପେକ୍ଷା କଲେ ।
ଗୁଲକ ବଡ଼ ପାଟିରେ ଡାକିଲା — ମାଇକେଲ !

ଘନ ଟ୍ରୋମର ପୁଅ ମାଇକେଲି ଜବାବ ଦେଲା — ହଁ ।
ଆଠ ଦଶ ଜଣ ମୋ ପଛେ ପଛେ ହେଟା ବାଘ ଭଳି ପାଗଳ
ହୋଇ ଏଆଡ଼େ ଧାଇଁଛନ୍ତି ।

ଗୁଲକ ଫିନ୍ନିୟୁାସ ଜଣେ ଦକ୍ଷ ଶିକାରି । ଏ ଅଞ୍ଚଳଟା
ତାହାର ନଖ ଦର୍ପଣରେ । ସେ ମନେ ମନେ ଗୋଟିଏ ନିରାପଦ
ଜାଗା ସ୍ଥିର କରି ଜୋରରେ ସେଆଡ଼କୁ ଗାଡ଼ି ଚଳାଇଲା ।
ଏଣେ ଗୁଣ୍ଡାମାନେ ଗାଡ଼ିର ପଛରେ ଘୋଡ଼ା ଛୁଟାଇ ଥାଆନ୍ତି ।

ହେଉରର ତରଳ ଆଲୁଅରେ ଗୁଲକ ହଠାତ୍ ଗାଡ଼ିଟା
ଘୁରାଇ ଗୋଟାଏ ପାହାଡ଼ କଡ଼ରେ ଆଣି ରଖିଲା । ସାମନାରେ
ଗୋଟାଏ ଉଚ୍ଚ ପଥର ପ୍ରାଚୀର ଏବଂ ତା ପରେ ପାହାଡ଼ । ସମସ୍ତେ
ଚଟାପଟ ଗାଡ଼ିରୁ ଓହ୍ଲାଇଲେ । ଫିନ୍ନିୟୁାସ ହ୍ୟାରିକୁ କାଖେଇ
ଗୋଟାଏ ସରୁଅଙ୍କାବଙ୍କା ଚଲାବାଟରେ କୁଦା କୁଦି ଗଲା, ତାହାର
ପଛେ ପଛେ ଜିମ ବୁଢ଼ୀ ମାଆକୁ କାନ୍ଧେଇ ଏବଂ ଜର୍ଜ ଏଲିଜାର
ହାତ ଧରି । ଅନ୍ୟ ପକ୍ଷରେ ମାଇକେଲ ଗାଡ଼ିଟା ଆମାରିୟାର ଘର
ଅଭିମୁଖେ ଛୁଟାଇଲା । ଉଠାଣି ବାଟଟା ଦୁଇ ହାତ ଚଉଡ଼ା ଓ
ତରିଶ ହାତ ଗଭୀରର ଗୋଟିଏ ଖାତ ପାଖରେ ସରିଛି । ଖାତର
ଆର ପଟେ ତରିଶ ଫୁଟ ଉଚ୍ଚର ପାହାଡ଼ । ସମସ୍ତେ ଖାତଟା ଡେଇଁ
ପଡ଼ି ଖଣ୍ଡିଏ ସ୍ତମ୍ଭ ଉଚ୍ଚ ପଥର ପଛରେ ଯାଇ ଠିଆ ହେଲେ ।

ଜର୍ଜର ପିସ୍ତଲର ଗୁଳିରେ ଗୁଣ୍ଡା ସର୍ଦ୍ଦାର ଆହତ ହେଲା ।
ଫିନ୍ନିୟୁାସ ତାହାକୁ ଖାତ ଭିତରକୁ ପେଲି ଦେଲା । ଦଳର
ଅନ୍ୟମାନେ ତାହାକୁ ଛାଡ଼ି ପଳାଇଲେ । ଇତି ମଧ୍ୟରେ ମାଇକେଲ

ଦଳ ବଳ ନେଇ ପୁଣି ସେଠାରେ ପହଞ୍ଚିଲା । ଜର୍ଜ ଓ ଅନ୍ୟମାନେ ମୁକ୍ତିର ସନ୍ଧାନରେ ଆଗକୁ ଗ୍ଭଲିଲେ ।

୪

ସେଣ୍ଟ କ୍ଲେୟାରର ଘରେ ଟମର ଦିନ ଭଲରେ କଟିବାକୁ ଲାଗିଲା । କିନ୍ତୁ ସ୍ତ୍ରୀ ଓ ପୁଅ ଝିଅଙ୍କୁ ଛାଡ଼ି ଦେଇ ଆସିଥିବାରୁ ତାହାର ମନରେ ଭଲେ ହେଲେ ଶାନ୍ତି ନ ଥିଲା ।

ସେଣ୍ଟ କ୍ଲେୟାର ଦାସ ପ୍ରଥାର ବିରୋଧୀ । ମାତ୍ର ତାହାର ସ୍ତ୍ରୀ ଏହି ପ୍ରଥାର ସମର୍ଥକ, ଧନୀକର କନ୍ୟା, ସର୍ବଦା ଶଯ୍ୟାଶାୟୀ, ଖିଟିଖିଟିଆ ମିଜାଜ ଓ ନିର୍ଦ୍ଦୟ । ଝିଅ ଇଭାର ସ୍ୱଭାବ ଠିକ୍ ବାପପରି । ସେ ଟମର ଘରକୁ ଯାଇ ଦେଖିଲା, ଟମ କକା ତାହାର ସ୍ତ୍ରୀକୁ ଚିଠି ଲେଖୁଛି ।

ଚିଠିଟି ଯଥା ସମୟରେ ଯାଇ ପହଞ୍ଚିଲା । ଟମ ଜାଣିବାକୁ ଗ୍ଭହିଁଥିଲା, ତାହାର ମୁନିବ କେବେ ତାହାର ଖେସାରତର ଟଙ୍କା ଯୋଗାଡ଼ କରି ପାରିବ ? ମାତ୍ର ସେତେବେଳେ ଶେଲବୀର ବ୍ୟବସାୟରେ ଆଦୌ ଉନ୍ନତି ହୋଇ ନ ଥିବାରୁ, ଟଙ୍କା ଯୋଗାଡ଼ କରିବା ସମ୍ଭବପର ନ ଥିଲା । ତଥାପି ସେମାନେ ନିଶ୍ଚିନ୍ତରେ ବସି ନ ଥିଲେ । ଶ୍ରୀମତୀ ଶେଲବୀ ସ୍ଥିର କରିଥିଲା, ନିଜର ଅବସର ସମୟରେ ଗୀତ ଶିଖାଇ ଏବଂ ଟମର ସ୍ତ୍ରୀ ଲୁସିଭିଲରେ ଗୋଟିଏ ସରାଇଖାନାରେ ରାନ୍ଧୁଣି କାମ କରି ଟଙ୍କାତକ ଜମାଇ ଟମର ମୁକ୍ତି ନିମନ୍ତେ ତାହାର ମୁନିବକୁ ପଠାଇବ ।

ଶେଲବୀର ପୁଅ ଜର୍ଜ ଟମକୁ ଜବାବ ଦେଲା— ତାହାର ମୁକ୍ତି ପାଇଁ କାକୀ ଲୁସିଭିଲରେ ଗ୍ଭକିରି କରିବାକୁ ଯାଇଛି, ସେ ପାଠ

ପକ୍ଷୀନ୍ତି, ସେମାନେ ଗୁଟିଏ ଘୋଡ଼ା କ୍ରୟ କରିଛନ୍ତି, ଟମ ନ ଥିବାରୁ ତାହାର ଘରେ ତାଲା ଦିଆ ହୋଇଛି ।

ଚିଠିଟି ପଢ଼ି ଟମର ମନ ଆନନ୍ଦରେ ପୁଲକିତ ହେଲା । ଇତି ମଧ୍ୟରେ ଟମ ଏଠାରେ ଦୁଇ ବର୍ଷ ବିତାଇଲାଣି । ଇଭା ଟମ ସାଙ୍ଗରେ ବହୁ ସମୟରେ ଗପସପ କରୁଥିଲା । ସେ ଯକ୍ଷ୍ମା ରୋଗରେ ଶଯ୍ୟାଶାୟୀ ହୁଅନ୍ତେ ତାହାର ବାପା ଦୁଃଖରେ ଭାଙ୍ଗି ପଡ଼ିଲେ । ଯଥାଯଥ ଚିକିତ୍ସା, ସେବା ଶୁଶ୍ରୂଷା, ଆଦର ଯତ୍ନ କୌଣସି ମତେ ତାହାକୁ ରୋଗମୁକ୍ତ କରି ପାରିଲା ନାହିଁ । ମୃତ୍ୟୁ ଆଗରୁ ସେ ତାହାର ମଥାର ସୁନେଲି ବାଳସବୁ କାଟି ସ୍ମୃତି ଚିହ୍ନ ରୂପେ ସମସ୍ତଙ୍କୁ ଦାନ କଲା । କେତୋଏ ବାଳ ଟମକୁ ଦେଇ ସେ କହିଲା— ଟମ କକା, ତୁମ ସାଙ୍ଗରେ ସ୍ୱର୍ଗରେ ପୁଣି ମୋର ଦେଖା ହେବ । ଟମ ପ୍ରାୟ ସବୁ ବେଳେ ତାହା ପାଖରେ ବସିଥାଏ ଏବଂ ତାହାକୁ ଗୀତ ଗାଇ ଶୁଣାଏ । ଅବଶେଷରେ ଦିନେ ଇଭା ଆଉ ଆଖି ଖୋଲିଲା ନାହିଁ । ଟମର ହାତ ଧରି ସେଣ୍ଟ କ୍ଲେୟାର କହିଲା— ମୋ ଛାତି ଫାଟି ଯାଉଛି । ଟମର ଆଖିରୁ ମଧ୍ୟ ଲୁହ ଝରିଲା ।

ଦିନେ ସେଣ୍ଟ କ୍ଲେୟାର କହିଲା—ଟମ, ମୁଁ ତୁମକୁ ମୁକ୍ତ ଦେବି ।

ଏହାଶୁଣି ଟମର ମୁଖ ଆନନ୍ଦରେ ଝଲସିଲା— ଭଗବାନଙ୍କର ଜୟ ହେଉ ।

କ୍ଲେୟାର ବ୍ୟଥିତ ହେଲା— ଟମ, ତୁମେ ତ ଏଠାରେ ଦୁଃଖରେ ନ ଥିଲ ।

ସ୍ୱାଧୀନ ହେବି, ସେଥି ପାଇଁ ମୋର ଅପାର ଆନନ୍ଦ ।

ତୁମକୁ ମୁଁ ଯେଉଁସବୁ ପୋଷାକପତ୍ର ଦେଇଛି, ନିଜ ରୋଜଗାରରେ ତ ତୁମେ କେବେ କିଣି ପାରି ନ ଥାଆନ୍ତ ।

ବୁଝୁଛି । ଆପଣ ଅତିଶୟ ମହତ । କିନ୍ତୁ ପରର ସବୁ ଠାରୁ ଭଲ ପୋଷାକ ପିନ୍ଧିବା ଅପେକ୍ଷା ମୋ ନିଜର ଯାହା ଅଛି ସେଥିରେ ମୁଁ ସନ୍ତୁଷ୍ଟ ।

ଆଚ୍ଛା, ମାସକ ଭିତରେ ତୁମେ ଏଠାରୁ ଚାଲିଯିବ ।

ନା, ଆପଣ ମାନସିକ ଶାନ୍ତି ଲାଭ ନ କରିବା ଯାଏ ମୁଁ ଆପଣଙ୍କୁ କଦାପି ଛାଡ଼ି ଦେଇ ଯିବ ନାହିଁ ।

କ୍ଲେମ୍ପାର ଟୋପି ନାଇ ସରାଇଖାନା ଆଡ଼କୁ ଚାଲିଗଲା । ଟମ ରାତିରେ ବାରନ୍ଦାରେବସି ଚମତ୍କାର ଜ୍ୟୋତ୍ସ୍ନା ଉପଭୋଗ କଲା । ନିଜର ପରିବାର ଓ ଇଭ କଥା ଭାବୁଁ ଭାବୁଁ ତାହାର ଆଖି ତନ୍ଦ୍ରାରେ ମୁଦିଗଲା । ଦରଜାରେ ହଠାତ୍ ଜୋରରେ ଆଘାତ ହେବାରୁ, ସେ ଆଖି ମେଲି ଦେଖିଲା ଯେ କେତେ ଜଣ ଲୋକ ତାହାର ମୁନିବକୁ ଟେକି ଟେକି ଆଣି ଶୁଆଇ ଦେଲେ । ସନ୍ଧ୍ୟା ବେଳେ କ୍ଲେମ୍ପାର ଖବର କାଗଜ ପଢ଼ିବାକୁ ସରାଇଖାନାକୁ ଯାଇଥିଲା । ସେଠାରେ ଦୁଇ ଜଣ ମଦୁଆ ମରାମରି ହେବାର ଦେଖି, ଜଣକର ହାତରୁ ଛୁରୀଟା କାଢ଼ି ନେବାକୁ ଗଲା ବେଳେ ସେହି ଲୋକଟି କ୍ଲେମ୍ପାରର ଛାତିରେ ଛୁରୀ ଭୂଷିଦେଲା ।

ଘର ଭିତରେ ହାହାକାର ପଡ଼ିଲା ଉଠିଲା । ଡାକ୍ତର ଆସିଲା, ମାତ୍ର ସେ କିଛି କରି ପାରିଲା ନାହିଁ । ଟମର ହାତ ଉପରେ ହାତ ରଖି କ୍ଲେମ୍ପାର ମାରିବରେ ତାହାର ମୁହଁକୁ ଚାହିଁ ରହି ଆଖି ବୁଜିଲା ।

ତା ପରେ ଟମ ଓ ଆଉ ଛଅ ଜଣ ଦାସଦାସୀଙ୍କୁ ନିଲାମରେ ବିକିବା ପାଇଁ ଗୋଦାମ ଘରକୁ ପଠାଗଲା । ସେଠାରେ ଗୋରା ଦାସ ବ୍ୟବସାୟୀମାନେ ବିଭିନ୍ନ ବୟସର ମଣିଷ ପଣ୍ୟକୁ ନାନା ଭାବରେ ପରୀକ୍ଷା କରିବାକୁ ଲାଗିଲେ । ନିଲାମର କିଛି ସମୟ ଆଗରୁ ଜଣେ

ଷଣ୍ଢ଼ା ମାର୍କା ଲୋକ ଆସି ଟମର ଦାନ୍ତ ଓ ପେଶୀସବୁ ପରୀକ୍ଷା କଲା ଏବଂ ତାହାକୁ କେତେ କଥା ପଚାରିଲା ।

ନିଲାମ ଡାକ ଆରମ୍ଭ ହେଲା । ଦାସଦାସୀମାନଙ୍କର ବିକା କଣା ଚାଲିଲା । ଶେଷରେ ସାଇମନ ଲେଗ୍ରୀ ଟମକୁ ଚଢ଼ା ଦାମରେ କିଣି ନେଲା ।

ରେଡ଼ ନଦୀ କୂଳରେ ଗୋଟିଏ ଜାଗାରେ ଲେଗ୍ରୀ ତୁଳା ଚାଷ କରେ । ଟମ ସମେତ ଆଠ ଜଣ କ୍ରୀତଦାସ-ଦାସୀଙ୍କୁ ହାତକଡ଼ି ପିନ୍ଧାଇ ସେ ଷ୍ଟିମାରରେ ବସାଇଲା । ଜ୍ଲେୟାର ଟମକୁ ଦାମିକା ପୋଷାକ, ଜୋତା, ପେଟରା, ଇତ୍ୟାଦି ଦେଇଥିଲା । ଲେଗ୍ରୀ ଏସବୁ ତାହା ଠାରୁ କାଢ଼ି ନେଇ ପୁରୁଣା ଛିଣ୍ଡା ଦଦରା ପୋଷାକ ପିନ୍ଧିବାକୁ ଦେଲା । ଟମର ପକେଟରେ ଇଭାର କେତେ ଟି ପ୍ରିୟ ଗ୍ରନ୍ଥ ଜିନିଷ ସ୍ମୃତି ଚିହ୍ନ ରୂପେ ଥିଲା । ଲେଗ୍ରୀ ସେଗୁଡ଼ାକ ମଧ୍ୟ ନଦୀକୁ ଫିଙ୍ଗିଦେଲା ଏବଂ ତାହାର ଜିନିଷପତ୍ରସବୁ ବିକି ଟଙ୍କା ନିଜ ପକେଟରେ ପୂରାଇଲା ।

ଟମର କୋଟ ପକେଟରେ ଖଣ୍ଡିଏ ପ୍ରାର୍ଥନା ବହି ଥିଲା । ଲେଗ୍ରୀ ସେଇଟା କାଢ଼ି ନେଇ କହିଲା— ହୁଁ, ଧାର୍ମିକ, ଗୀର୍ଜାକୁ ଯାଉ ! ସେ କଥା ଆଉ ପଡିବ ନାହିଁ । ଏଣିକି ମୁଁ ତୋର ଗୀର୍ଜା । ମୁଁ ତୋତେ ଯାହା କହିବି, ତାହା ଶୁଣିବାକୁ ହେବ ।

ଟମ ଦୃଢ଼ ଚିତ୍ତରେ ପ୍ରତିବାଦ ଜଣାଇଲା— କଦାପି ନୁହେଁ ।

ଷ୍ଟୀମାର ଗୋଟିଏ ଗ୍ରଣ୍ଟ ସହରର ଘାଟରେ ଅସି ଲାଗିଲା । ଲେଗ୍ରୀ ତାହାର ଜୀବନ୍ତ ମାଲପତ୍ରସବୁ ଧରି ଓହ୍ଲାଇଲା । ସେଠାରୁ ତାହାର ଚାଷ ଜମି ଅନେକ ଦୂରରେ । ସେ ଦୁଇ ଜଣ ନିଗ୍ରୋ ଦାସୀଙ୍କୁ ନେଇ ଗୋଟିଏ ଗାଡ଼ିରେ ବସିଲା । ଟମ ଓ ପାଞ୍ଚ ଜଣ ନିଗ୍ରୋ ଦାସ ତାହା ପଛେ ପଛେ ଚାଲିଲେ ।

ଗାଡ଼ିଟି ଯେମିତି କଦର୍ଯ୍ୟ, ରାସ୍ତା ବି ସେମିତି ଖାଦୁଆ । ବାଟରେ ଜନ ବସତି ନାହିଁ ; ମଝିରେ ମଝିରେ ଜଳା ଭୂମି ଓ ସାଇପ୍ରେସ ବଣ । ତାହାରି ଭିତରୁ ଜଦାକାର ମୋକାସିନ ସାପସବୁ ଉଙ୍କି ମାରୁ ଥାଆନ୍ତି । ସେମାନେ କିଛି ଦୂର ଗଲା ପରେ ଲେଗ୍ରୀ ମଦ ପିଇ ମାତାଲ ହେଲା । ଶେଷରେ ଗାଡ଼ିଟି ଆସ୍ତେ ଆସ୍ତେ ଜଙ୍ଗଲ ଭିତରେ ପଶିଲା ଏବଂ ଗୋଟିଏ ଶ୍ରୀହୀନ ଭଙ୍ଗା କୋଠା ସାମନାରେ ଯାଇ ରହିଲା । ଗାଡ଼ିର ଆବାଜ ପାଇ କେତୁଟା ହିଂସ୍ର କୁକୁର ଧାଇଁ ଆସିଲେ । ଲେଗ୍ରୀ ଠିକ ଠିକ ଗାଡ଼ିରୁ ଓହ୍ଲାଇ କୁକୁରଗୁଡ଼ାକୁ ଆଉଁସି ଆଉଁସି କ୍ରୀତଦାସମାନଙ୍କୁ ଅନାଇ କହିଲା— ସାବଧାନ ! ଖସିପଳାଇବାକୁ ଚେଷ୍ଟା କଲେ ତୁମର ଦଶା କଅଣ ହେବ ବୁଝି ପାରୁଛ ତ ! ଯେଉଁଠାକୁ ଗଲେ ସୁଦ୍ଧା ଏମାନେ ତୁମକୁ ଖୋଜି ବାହାର କରି ଝୁଣି ପକାଇବେ !

ସାମ୍ବୋ ଓ କୁଇମ୍ବୋ ନାମକ ତାହାର ଦୁଇ ଜଣ ନିର୍ଦ୍ଦୟ ନିଗ୍ରୋ ଦାସ ସେଠାରେ ଠିଆ ହୋଇଥିଲେ । ସେମାନେ ମୁନିବ ପାଇଁ ସବୁ ରକମ ଅପକର୍ମ କରି ପାରନ୍ତି । ଲେଗ୍ରୀ ସାମ୍ବୋକୁ କହିଲା— ଏହି ମାଇକିନାକୁ ତୋ ଲାଗି କିଣି ଆଣିଛି, ତୋର ସ୍ତ୍ରୀ ହେବ ।

ସ୍ତ୍ରୀ ଲୋକଟି ସଙ୍ଗେ ସଙ୍ଗେ ପ୍ରତିବାଦ କଲା— ହଜୁର, ନିଉଁ ଅରଲିୟନସରେ ମୋର ସ୍ୱାମୀ ଅଛି ।

ଥାଉ, ତୋତେ ପୁଣି ଏଠାରେ ବିଭା ହେବାକୁ ପଡ଼ିବ, ଯାଆ ତାହା ସାଙ୍ଗରେ— କହି ଲେଗ୍ରୀ ଗୁବୁକ ଉଞ୍ଚାଇଲା ।

ଚାଲ, ଚାଲ, ମୁଁ ତୋତେ ବିଭା ହେବି— କହି ସାମ୍ବୋ ସାମ୍ପସନ୍ଙ୍କୁ ନେଇ ବସ୍ତି ଆଡ଼କୁ ଚାଲିଲା । ବସ୍ତିଟା ଲେଗ୍ରୀର ଘରଠାରୁ ଟିକିଏ ଦୂରରେ । ଦୁଇ ପଟେ ଧାଡ଼ି ଧାଡ଼ି କୁଡ଼ିଆ, ମଝିରେ ସରୁ

କାଦୁଅ ରାସ୍ତା । ଗୋଟିଏ ସନ୍ତସନ୍ତିଆ କୁଡ଼ିଆରେ ସେମାନଙ୍କୁ ରଖାଗଲା । ତଳେ ଭୁଲା ମଞ୍ଜି ସବୁ ପଡ଼ିଥିଲା ।

ରାତି ହେଲାରୁ ଅନ୍ୟ ଦାସଦାସୀମାନେ କାମରୁ ଫେରିଲେ —ଶ୍ରାନ୍ତ କ୍ଲାନ୍ତ, ଛିଣ୍ଡା ମଇଳା ପୋଷାକ ପରିହିତ । ସେମାନେ ଗହମ ପେଷି ଚୁଲି ଲଗାଇ ରୋଟି ତିଆରି କଲେ । ଟମ ଦୀର୍ଘ ପଥ ଚାଲି ଚାଲି ଅତ୍ୟନ୍ତ କ୍ଲାନ୍ତ ହୋଇ ବସିଥିଲା । କୁଇମ୍ବୋ ତାହା ସାମନାରେ ଥଳିଏ ଗହମ ଫିଙ୍ଗାଇ ଦେଇ କହିଲା— ନେ, ମନେ ରଖ, ଏଥିରେ ତୋତେ ସପ୍ତାହେ ଚଳିବାକୁ ହେବ ।

ସମସ୍ତେ ଗହମ ପେଷି ସାରିଲାରୁ, ଟିକିଏ ବେଶି ରାତିରେ ଟମ ନିଜର ଗହମ ପେଷିବାକୁ ବସିଲା । ଦୁଇ ଜଣ ବୁଢ଼ୀ ନିଗ୍ରୋ ଦାସୀ ନିଜର ଗହମ ପେଷି ପାରୁ ନ ଥିଲେ । ଟମ ସେମାନଙ୍କର ଗହମ ପେଷି ଦେଲା ଏବଂ ସେମାନେ ମଧ୍ୟ ଟମ ପାଇଁ ରୋଟି ସେକି ଦେଲେ ।

ଟମ ଚୁଲିର ଆଲୁଅରେ ବାଇବେଲ ପଢ଼ି ଶିଆପିଆ ସାରି ଶୋଇ ପଡ଼ିଲା । ସକାଳେ ଅନ୍ୟମାନଙ୍କ ସହିତ କ୍ଷେତକୁ ଯାଇ ସେ ତୁଳା ତୋଳିବାକୁ ଲାଗିଲା । ସାମ୍ବୋ ଓ କୁଇମ୍ବୋ ଚାବୁକ ଧରି ସେମାନଙ୍କର କାମ ତଦାରକ କରୁଥିଲେ ।

## ୭

କିଛି ଦିନ ପରେ ବୁଦ୍ଧିମାନ ଟମ ସେଠାକାର ସବୁ ଅବସ୍ଥା ବୁଝି ପାରିଲା । ଲେଗ୍ରୀର ଦାସ ଦାସୀମାନେ ପଶୁଠାରୁ ବି ଅଧମ ଜୀବନ ଯାପନ କରୁଥିଲେ । ସେଠାରେ ଦୟା, ମାୟା, ମମତା କିଛି ନ ଥିଲା ।

ଲେଗ୍ରୀ ସେମାନଙ୍କୁ ମଣିଷ ବୋଲି ଆଦୌ ଗଣୁ ନ ଥିଲା । ମାତ୍ର ସେ ଟମକୁ ଜଣେ କାମିକା ଲୋକ ହିସାବରେ ଓଭରସିଅର କରିବାକୁ ମନେ ମନେ ଭାବୁଥିଲା । କିନ୍ତୁ ଟମର ସ୍ୱଭାବ ଖୁବ୍ ନରମ । ସେ ଲେଗ୍ରୀର ସମ୍ପୂର୍ଣ୍ଣ ବିପରୀତ । ଲେଗ୍ରୀ ନୀଚ, ମିଥ୍ୟାବାଦୀ ଓ ଦୁଷ୍ଟଚରିତ୍ର । ଟମ ହେଉଛି ମହତ, ସତ୍ୟବାଦୀ ଓ ସଚ୍ଚରିତ୍ର । ଟମ ମଣିଷକୁ କଷ୍ଟ ଦିଏ ନାହିଁ । ସେଥି ପାଇଁ ଲେଗ୍ରୀ ମୁନିବ ହେଲେ ସୁଦ୍ଧା ମନେ ମନେ ଟମକୁ ଭୟ କରେ । ଟମକୁ ଶାସ୍ତି ଦେବା ପାଇଁ ସେ ଓଡ଼ି ଉଣ୍ଡି ଥାଏ ।

ଦିନେ କ୍ଷେତରେ ଦାସ-ଦାସୀମାନେ ତୁଳା ତୋଳୁଥିଲେ । ଟମ ପାଖରେ ଜଣେ ରୋଗଣା ଦାସୀ ତୁଳା ତୋଳୁଥିଲା । ଦୁର୍ବଳତା ଯୋଗୁଁ ସେ ଠିଆ ହୋଇ ପାରୁ ନ ଥିଲା । ଟମ ତାହା ଠାକୁ ଯାଇ ନିଜ ଥଳିରୁ କେତେ ମୁଠା ତୁଳା କାଢି ତାହାର ଥଳିରେ ପୂରାଇ ଦେଇ ପୁଣି ନିଜ କାମରେ ମନ ଦେଲା ।

ସାମ୍ବୋ ଏହା ଦେଖି ପାରି ସେହି ସ୍ତ୍ରୀ ଲୋକଟିକୁ ବୁଟ ଜୋତାରେ ଗୋଇଠା ମାରିଲା ଏବଂ ଟମକୁ ଗାଳିକରେ ପାହାରେ ବସାଇଲା । ସ୍ତ୍ରୀ ଲୋକଟି ଅଚେତ ହୋଇ ତଳେ ପଡ଼ିଗଲାରୁ ସାମ୍ବୋ ତାହାର ଦେହରେ ପିନ କଣ୍ଟା ଫୋଡ଼ି ଫୋଡ଼ି ଉଠାଇଲା । ଗଭୀର ଯନ୍ତ୍ରଣାରେ ତାହାକୁ କାନ୍ଦ କାଟି ସେ ପୁଣି କାମରେ ଲାଗିଲା । ସାମ୍ବୋ ସେଠାରୁ ଚାଲିଗଲାରୁ, ଟମ ନିଜର ସବୁ ତୁଳା ତାହାର ଥଳିରେ ଅଜାଡ଼ି ଦେଲା । ତହୁଁ ସ୍ତ୍ରୀ ଲୋକଟି କହିଲା— ଏମିତି କାମ କର ନାହିଁ, ସେମାନେ ତୁମକୁ କଠିନ ଦଣ୍ଡ ଦେବେ ।

ମୁଁ ତାହା ସହି ପାରିବି, ମାତ୍ର ତୁମେ ତ ସହି ପାରିବ ନାହିଁ — କହି ଟମ କାମ କରିବାକୁ ଲାଗିଲା ।

ସଞ୍ଜ ବେଳେ ଦାସ-ଦାସୀମାନେ ତୁଳାର ଥଳି ନେଇ କାମର ହିସାବ ଦେବା ପାଇଁ ମୁନିବ ଲେଗ୍ରୀ ପାଖକୁ ଗଲେ । ଲେଗ୍ରୀ ଜଣ ଜଣକର ଥଳି ଓଜନ କରି ଖଣ୍ଡିଏ ସ୍ଲିଟରେ ମାପସବୁ ଲେଖି ରଖିଲା । ଟମ ଓ ସେହି ସ୍ତ୍ରୀ ଲୋକଟିର ଥଳିର ଓଜନ ନିର୍ଦ୍ଦିଷ୍ଟ ପରିମାଣ ହେଲା । ତଥାପି ଲେଗ୍ରୀ ସ୍ତ୍ରୀ ଲୋକଟିକୁ ଧମକ ଦେଲା, ଆଉ ଟମକୁ କହିଲା— ମୁଁ ତୋତେ ଓଭରସିଅର କରିଦେବି । ସେଥି ପାଇଁ ତୋତେ କାମ ଶିଖିବାକୁ ହେବ । ଏହି ସ୍ତ୍ରୀ ଲୋକଟିକୁ ନେଇ ଯାଇ ଚାବୁକରେ ପିଟ ତ ।

ଟମ ଜଣାଇଲା— ମାଫ୍ କରିବେ, ମୁଁ ଏମିତି କାମ କେବେ କରି ପାରିବି ନାହିଁ ।

ଲେଗ୍ରୀ ଗର୍ଜନ କରି ଟମକୁ ଚାବୁକ ଓ ଲାଠିରେ ବହୁତ ପିଟିଲା । ତଥାପି ଟମ ହାତରେ ଗାଲରୁ ରକ୍ତ ପୋଛି ଶାନ୍ତ କଣ୍ଠରେ କହିଲା —ହଜୁର, ଜୀବନ ଥିବା ଯାଏ ଆପଣଙ୍କ ପାଇଁ ନିଶ୍ଚୟ ଖଟିବି । କିନ୍ତୁ ଯାହା କରିବା ଉଚିତ ନୁହେଁ, ମୁଁ କଦାପି ତାହା କରି ପାରିବି ନାହିଁ ।

ମୋତେ ଶିଖାଉଛୁ, ସ୍ତ୍ରୀ ଲୋକଟାକୁ ଚାବୁକ ମାରିବା ଅନ୍ୟାୟ ?— ଲେଗ୍ରୀ ହୁଙ୍କାର ଛାଡ଼ିଲା ।

ଟମ ଦୃଢ଼ ସ୍ୱରରେ ପୁଣି କହିଲା— ମୋତେ ମାରି ପକାନ୍ତୁ ପଛକେ, ମୁଁ କାହା ଉପରକୁ କେବେ ହେଲେ ହାତ ଉଠାଇବି ନାହିଁ ।

ଲେଗ୍ରୀ କ୍ରୋଧରେ କମ୍ପିବାକୁ ଲାଗିଲା ଏବଂ ବିଦ୍ରୂପ କଲା —ଆମେ ସବୁ ପାପୀ, ଆଉ ତୁ ଏକମାତ୍ର ପରମ ଧାର୍ମିକ ପୁରୁଷ । ମୁଁ ତୋତେ ବାର ଶହ ଡଲାର ଦେଇ କିଣିଛି । ମୁଁ ତୋର ପ୍ରଭୁ, ଆଉ ତୁ ଦେହ ମନରେ ମୋର ଭୃତ୍ୟ ।

ସେ ଟମକୁ ପୁଣି ଲଠିରେ ବାଡ଼େଇଲା । ଟମ ନିର୍ଭୀକ ଭାବରେ ପ୍ରତିବାଦ କଲା— ନା, ନା, ଆପଣ ମୋ ମନ ଉପରେ ପ୍ରଭୁ ନୁହନ୍ତି । ମୋ ମନକୁ ଅନେକ ଦିନରୁ ଜଣେ କିଣି ନେଇ ସାରିଛି ।

ମୁନିବର ହୁକୁମରେ ସାମ୍ବୋ ଓ କୁଇମ୍ବୋ ଟମକୁ ନିର୍ଦ୍ଦୟ ପ୍ରହାର କଲେ । ଫଳରେ, ଟମ ରକ୍ତାକ୍ତ ଦେହରେ ତଳେ ପଡ଼ି ଯନ୍ତ୍ରଣାରେ ଛଟପଟ ହେଲା । ଶୋଷରେ ତାହାର ତଣ୍ଟି ଶୁଖିଗଲା । ସେ କରୁଣ କଣ୍ଠରେ ପ୍ରାର୍ଥନା କଲା — ହେ ଭଗବାନ, ମୋତେ ସହିବାକୁ ଯଥେଷ୍ଟ ଶକ୍ତି ଦିଅ ।

ସେତିକି ବେଳେ କ୍ରୀତଦାସୀ କେସି ଲଣ୍ଠନ ନେଇ ସେହି ଘରକୁ ପଶିଗଲା । ଟମ ତାହାକୁ କହିଲା— ମୋତେ ଟିକିଏ ପାଣି ଦିଅ ।

କେସି ପାଣି ଆଣି ଦେଲା, ଟମ ଢକଢକ କରି ପେଟେ ପାଣି ପିଇଲା । କେସି ତାହାକୁ ବୁଝାଇଲା— ଏଇଠି ଶୁଅ । ତୁମେ ଜଣେ ଜାନୁଆରର ହାତରେ ପଡ଼ିଛ । ତୁମେ ତାହା ସାଙ୍ଗରେ ଲଢ଼ି ପାରିବ ନାହିଁ, ତେଣୁ ତାହାର କଥା ମାନି ଚଳ । ଭଗବାନଙ୍କୁ ଡାକିଲେ ମଧ୍ୟ କିଛି ଫଳ ହେବ ନାହିଁ ।

ଟମ ଆଖି ମୁଦି ପଡ଼ି ରହିଲା । କେସି ଚାଲିଗଲା ।

ପର ଦିନ ସାମ୍ବୋ ଲେଗ୍ରୀର ହାତକୁ ଗୋଟିଏ କାଗଜ ପୁଡ଼ିଆ ବଢ଼ାଇ ଦେଇ କହିଲା— ନିଗ୍ରୋମାନେ ଡାହାଣୀଙ୍କ ଠାରୁ ଏହି କବଚ ଆଣନ୍ତି, ପିନ୍ଧିଲେ ଯେତେ ଚାବୁକ ମାରିଲେ ସୁଦ୍ଧା ସେମାନଙ୍କୁ କାଟିବ ନାହିଁ । ଟମ ଏହାକୁ ବେକରେ ପିନ୍ଧିଥିଲା ।

ଲେଗ୍ରୀ ପୁଡ଼ିଆଟି ଫିଟାଇଲା । ସେଥିରୁ ଗୋଟିଏ ଚକଚକିଆ ଡଲାର ଓ କେରିଏ ସୁନେଲି ବାଳ ବାହାରିଲା । ବାଳ କେରିକ ଧରିଲା ମାତ୍ରେ ତାହାର ମନେ ହେଲା, ସତେ ଯେମିତି ତାହାର

ଆଙ୍ଗୁଳଗୁଡ଼ାକ ପୋଡ଼ି ଯାଉଛି । ତହୁଁ ସେ ଚିତ୍କାର କଲା— ନେଇ ଯାଅ ଏଗୁଡ଼ାକ, ପୋଡ଼ି ପକାଅ । ସେ ନିଜେ ବାଳଗୁଡ଼ାକ ନିଆଁରେ ପକାଇ ଦେଲା ଏବଂ ଉଲ୍ଲରଟା ବାହାରକୁ ପିଙ୍ଗି ଦେଲା ।

ତେବେ ବି ଲେଗ୍ରୀ ଟମକୁ ଛାଡ଼ିଲା ନାହିଁ । ପର ଦିନ ସେ ଟମ ପାଖକୁ ଯାଇ କହିଲା— ଏ କୁକୁର, ମୋତେ କ୍ଷମା ମାଗ ।

ଟମର ସର୍ବାଙ୍ଗରେ ବେଦନା ଥିଲା । ସେ ଅତି କଷ୍ଟରେ ଠିଆ ହେବାକୁ ଚେଷ୍ଟା କଲା ।

ଆଣ୍ଠୁ ମାଡ଼ି ବସ— ଲେଗ୍ରୀର ହୁକୁମ ! ଟମ ସ୍ଥିର । ବସୁଛୁ ନା, କୁକୁର— କହି ଲେଗ୍ରୀ ଚାବୁକରେ ଟମକୁ ପିଟିଲା ।

ଟମ କହିଲା— ଯାହା ସତ୍ୟ ଓ ନ୍ୟାୟ ବୋଲି ବୁଝିଛି, ତାହା କରିଛି । ମୁଁ କ୍ଷମା ମାଗି ପାରିବି ନାହିଁ ।

ତାହା ହେଲେ ତୁ କଅଣ ଚାହୁଁଛୁ ଯେ ତୋତେ ନିଆଁରେ ଜିଅନ୍ତା ପୋଡ଼ି ମାରିବି ?

ଆପଣଙ୍କର ଯାହା ଇଚ୍ଛା କରି ପାରନ୍ତି । ମୋ ଶରୀରକୁ ଧ୍ୱଂସ କରି ପାରିବେ ସିନା, ଆଉ କିଛି ନୁହେଁ ।

ତୋତେ ମୋ ହୁକୁମ ମତେ ଚଳିବାକୁ ହେବ ।

ପାରିବି ନାହିଁ, ହଜୁର । ସାହାଯ୍ୟ କରିବେ ମୋତେ—।

କିଏ ?

ଭଗବାନ ।

ଆଣ୍ଠୁ ମାଡ଼ି ବସ ଶୀଘ୍ର— କହି ଲେଗ୍ରୀ ଟମକୁ ଗୋଟାଏ ଘୁଷି ମାରି ତଳେ ପକାଇ ଦେଲା । ସେତିକି ବେଳେ କେସି ଆସି ତାହାର ହାତ ଧରି ପକାଇ ପଚାରିଲା— ଭୁଲା ତୋଳିଲା ବେଳେ ଆଜି ତୁମ୍ଭେ ଜଣେ ଲୋକକୁ ମାରି ପକାଇଛ ?

ହେଉ, ପରେ ତୋତେ ଦେଖିବ— କହି ଲେଗ୍ରୀ ସଙ୍ଗେ ସଙ୍ଗେ ଚାଲିଗଲା ।

ଟମ୍ ଦୁଃଖରେ ଭାଙ୍ଗି ପଡ଼ିଲା, ମାତ୍ର ତାହାର ଭଗବତ୍ ବିଶ୍ୱାସ ଏତେ ଦୃଢ଼ ହେଲା ଯେ ସବୁ ଦୁଃଖ ବେଦନା ନିମିଷେ ଉଭାଇଗଲା । ତାହାର ମନ ଭିତରେ ଆନନ୍ଦର ସୁଅ ବହିଲା । ସେ ଜଣେ ନୂଆ ଧରଣର ମଣିଷ ରେ ପରିଣତ ହେଲା ।

ସକାଳେ ଟମକୁ ଦେଖି ଲେଗ୍ରୀ କହିଲା— କରେ କୁକୁର, ଆଜି ଉଠି ବସିଲୁଣି ! ତୋର ପରା ଶୋଇ ରହିବାର କଥା !

ହଁ, ହଜୁର— ଟମ ଆନନ୍ଦରେ ହସିଲା ।

ତାହାର ଏହି ଭାବ ଦେଖି ଲେଗ୍ରୀ ସହି ପାରିଲା ନାହିଁ, ନିର୍ଦ୍ଦୟ ଭାବରେ ତାହାକୁ ଚାବୁକରେ ପିଟିଲା । ଟମ ଧୀର ସ୍ଥିର ଭାବରେ ଠିଆ ହୋଇ ରହିଲା, ସତେ ଯେମିତି ଚାବୁକର ଆଘାତ ତାହାର ଦେହରେ ବାଜି ନାହିଁ । ଲେଗ୍ରୀ ମଧ୍ୟ ତାହା ବୁଝି ପାରିଲା ।

ରାତରେ କେସି ଚୁପି ଚୁପି ଯାଇ ଟମକୁ କହିଲା— ମୁନିବ ଶୋଇ ପଡ଼ିଛି । ପଛ ଦୁଆର ଖୋଲା ଅଛି । ତୁମେ ତାହାକୁ ଖତମ କରି ଦେଇ ସେହି ବାଟେ ପଳାଇ ଯାଅ ।

ଟମ ସେଥିରେ ରାଜି ହେଲା ନାହିଁ—ନା ମୁଁ କାହାକୁ ଖୁନ୍ କରି ପାରିବି ନାହିଁ । ତୁମେ ଓ ସେହି ସ୍ତ୍ରୀ ଲୋକଟି ପଳାଇ ଯାଇ ପାର ।

ତୁମେ ବି ଆମ ସାଙ୍ଗରେ ଚାଲ ।

ତାହା ହୋଇ ନ ପାରେ । ମୋତେ ଏଠାରେ ସବୁ କଷ୍ଟ ନୀରବରେ ସହିବାକୁ ପଡ଼ିବ ।

ଟମ ପ୍ରତି କେସିର ଶ୍ରଦ୍ଧା ଆଦର ବଢ଼ିଗଲା । ପର ଦିନ ସେ ଘରର ଛାତ ଉପରେ ଗୋଟିଏ ଖାଲି ବୋତଲ ଏମିତି ଭାବରେ

ରଖି ଦେଇ ଆସିଲା ଯେ ପବନ ଟିକଏ ଜୋରରେ ବହିଲେ ତାହା ଭିତରୁ ଗୋଟାଏ ଅଜବ ଶବ୍ଦ ବାହାରିଲା । ଘରେ ସେ ଲେଗ୍ରୀକୁ କେତେଗୁଡ଼ାଏ ଭୂତ ଗପ କହି ତାହାର ମନରେ ଖୁବ୍ ଭୟ ସଞ୍ଚାର କଲା । ବୋତଲରୁ ବାହାରୁଥିବା ଅବିକଳ କାନ୍ଦଣା ପରି ଶବ୍ଦ ଶୁଣି ଲେଗ୍ରୀର ମନରେ ଗୋଟାଏ ଆଶଙ୍କା ଜାତ ହେଲା ଯେ ନିହତ ଦାସ ଦାସୀଙ୍କର ଆତ୍ମାସବୁ ଘର ଉପରେ ବସି କାନ୍ଦୁଛନ୍ତି । ତାହାର ଦେହରେ ଅସୁରର ଶକ୍ତି ଥିଲେ ମଧ୍ୟ, ସେ ଭୟରେ କାଠ ହୋଇ ବସି ରହିଲା ।

ପର ଦିନ ଲେଗ୍ରୀ କୌଣସି କାମରେ କେଉଁଆଡ଼େ ଗଲାରୁ, ସେହି ସୁଯୋଗରେ କେସି ଓ ଏମିଲିନ ଖସି ପଳାଇଲେ । ସେମାନେ ଦିନରେ ଜଳା ପାଖରେ ଲୁଚି ରହିଲେ ଏବଂ ସଞ୍ଜ ହେବାରୁ ଅନ୍ଧାରରେ ଘରକୁ ଫେରିଆସି ଘର ଉପରେ ଛପିଗଲେ ।

ଲେଗ୍ରୀ ସେମାନଙ୍କର ପଳାୟନର ଖବର ଶୁଣି ତାହାର ଚାକର ବାକର ଓ କୁକୁରଗୁଡ଼ାକ ନେଇ ଘରେ ଓ ପର ଦିନ ତେର୍ ଖୋଜାଖୋଜି କଲା । କ୍ଲାନ୍ତ ହୋଇ ଫେରି ଆସି ସେ ମଦ ବୋତଲ ନେଇ ବସିଲା ଏବଂ ଟେମକୁ ଡାକିଲା । ସେ ଟେମକୁ ପଚାରିଲା— ମୁଁ ତୋତେ ମାରିଦେବାକୁ ସ୍ଥିର କରିଛି, ତୁ ଏହା ଜାଣୁ ?

ହୋଇ ପାରେ— ଟେମ ଶାନ୍ତ ମୂର୍ତ୍ତି ପରି ଠିଆ ହୋଇ ରହିଲା

ସେହି ସଇତାନି ଦୁଇଟା କେଉଁଠି ଅଛନ୍ତି ନ କହିଲେ, ମୁଁ ତୋତେ ମାରି ପକାଇବି ।

ମୋର କିଛି କହିବାର ନାହିଁ ।

ଜାଣି ନାହୁଁ ?— ଧମକାଇ ଲେଗ୍ରୀ ତାହାକୁ ଚାବୁକରେ ପିଟିଲା ।

ଟେମ ଧୀରେ ଧୀରେ କହିଲା— ଜାଣେ ହଜୁର, କିନ୍ତୁ ମୁଁ କହି ପାରିବି ନାହିଁ ।

ତହୁଁ ଲେଗ୍ରୀ ଓ ତାହାର ଦୁଇ ସଇତାନ ଅନୁଚର ଟମ ଉପରେ ଅମାନୁଷିକ ଅତ୍ୟାଚାର ଚଳାଇଲେ । ଟମର ସର୍ବାଙ୍ଗ କ୍ଷତ ବିକ୍ଷତ ଓ ରକ୍ତାକ୍ତ ହେଲା । ସେ ଭୂଇଁରେ ଢଳି ପଡ଼ିଲା । ତଥାପି ପଶୁଗୁଡ଼ାକ ତାହାକୁ ଛାଡ଼ିଲେ ନାହିଁ, ପୁଣି ନିର୍ଯାତନ ଚଳାଇଲେ ।

ଟମ ଆସ୍ତେ ଆସ୍ତେ ଆଖି ମେଲି ଲେଗ୍ରୀକୁ କହିଲା— ଆପଣ ମୋର ଆଉ କିଛି କ୍ଷତି କରି ପାରିବେ ନାହିଁ । ମୁଁ ଆପଣଙ୍କୁ କ୍ଷମା କଲି । ତା ପରେ ସେ ଅଚେତ ହୋଇ ପଡ଼ି ରହିଲା ।

ଦୁଇ ଦିନ ପରେ ଶେଲବୀର ପୁଅ ଜର୍ଜ ଟମକୁ ନେଇଯିବା ଉଦ୍ଦେଶ୍ୟରେ ସେଠାରେ ଆସି ପହଞ୍ଚିଲା । ଇତି ମଧ୍ୟରେ ଶେଲବୀର ଦେହାନ୍ତ ହୋଇଛି ଏବଂ ଶ୍ରୀମତୀ ଶେଲବୀ ନିଜ ସମ୍ପତ୍ତିରୁ କିଛି ଅଂଶ ବିକି ଋଣ ପରିଶୋଧ କରିଛି ।

ଟମ ଗୋଟିଏ କଦର୍ଯ୍ୟ କୁଡ଼ିଆରେ ପଡ଼ିଥିଲା । ତାହାର ଅପରିଷ୍କାର ବିଛଣା ପାଖରେ ଆଣ୍ଠୁ ମାଡ଼ି ବସି ଲୁହ ଛଳଛଳ ଆଖିରେ ଜର୍ଜ ଡାକିଲା— ଟମ୍ କକା, ଉଠ, କଥା କୁହ । ଦେଖ, ତୁମର ଜର୍ଜ ଆସିଛି ।

ଧୀରେ ଧୀରେ ଆଖି ମେଲି ଟମ ମୃଦୁ କଣ୍ଠରେ କହିଲା— ଜର୍ଜ ! କ୍ରମେ କ୍ରମେ ତାହାର ମୁଖ ଉଜ୍ଜ୍ୱଳ ହେଲା । ତାହାର ଆଖିରୁ ଲୁହ ଗଡ଼ିଲା— ଭଗବାନଙ୍କୁ ଧନ୍ୟବାଦ । ଯେଉଁଥି ପାଇଁ ତାହାଙ୍କ ନିକଟରେ ପ୍ରାର୍ଥନା କରିଥିଲି, ଆଜି ସତରେ ତାହା ପୂର୍ଣ୍ଣ ହେଲା । ବାସ୍ତବିକ ସେମାନେ ମୋତେ ଏଯାଏ ଭୁଲି ନାହାନ୍ତି । ଏବେ ମୁଁ ଶାନ୍ତିରେ ମରି ପାରିବି ।

ତୁମକୁ ମୁଁ ମରିବାକୁ ଦେବି ନାହିଁ, ଟମ କକା । ମୁଁ ପରା ତୁମକୁ ଏଠାରୁ ଫେରାଇ ନେବାକୁ ଆସିଛି ।

ଜର୍ଜ, ବେଳ ଉଚ୍ଛୁର ହୋଇଗଲା । ଭଗବାନ ମୋତେ କେବେଠୁଁ କିଣି ନେଲେଣି । ତାହାଙ୍କ ଘରକୁ ନେଇଯିବେ ।

ଟମ କକା, ତୁମେ ଏହି ଅସହ୍ୟ ଯନ୍ତ୍ରଣାରେ ମରିଗଲେ ମୋ ଛାତି ଫାଟିଯିବ— କହୁଁ କହୁଁ ଜର୍ଜର କଣ୍ଠ ରୁଦ୍ଧ ହେଲା ।

ଜର୍ଜର ହାତଟି ଧରି ଟମ ଆସ୍ତେ ଆସ୍ତେ କହିଲା— ଜର୍ଜ, ଏସବୁ କଥା ତୁମ କାକୀକୁ କେବେ ହେଲେ କହିବ ନାହିଁ । ପିଲା-ମାନଙ୍କ ପାଇଁ ମୁଁ ବରାବର ଆଉଟି ପାଉଟି ହୋଇଛି । ସମସ୍ତଙ୍କୁ ମୋର ଶ୍ରଦ୍ଧା ଜଣାଇବ । ଦୁନିଆରେ ସମସ୍ତଙ୍କୁ ମୁଁ ଭଲ ପାଏଁ ।

ଟମ ଆଉ କିଛି କହି ପାରିଲା ନାହିଁ । ତାହାର ଜୀବନ ଦୀପ ଦପ୍ କରି ଲିଭିଗଲା ।

ଜର୍ଜ ସେଠାରେ ସ୍ଥିର ହୋଇ ବସି ରହିଲା ।

# ଲେଖକ ପରିଚୟ

**ହାରମେନ ହେସ :**

ନାଜୀବାଦର ସମର୍ଥକ ନ ଥିବାରୁ ପ୍ରସିଦ୍ଧ ଜର୍ମାନ ସାହିତ୍ୟିକ ହାରମେନ ହେସ (୧୮୭୭-୧୯୬୨) ବାଧ୍ୟ ହୋଇ ୧୯୧୨ ସାଲରେ ସ୍ୱଦେଶ ତ୍ୟାଗ କରି ସୁଇଜରଲାଣ୍ଡକୁ ଚାଲି ଯାଇଥିଲେ ଏବଂ ସେଠାରେ ତାହାଙ୍କୁ ୧୯୨୩ରେ ନାଗରିକତ୍ୱ ଗ୍ରହଣ କରିବାକୁ ପଡ଼ିଥିଲା । ସେ ଏକାଧାରରେ କବି, ଦାର୍ଶନିକ, ଔପନ୍ୟାସିକ, କଥାକାର, ଚିତ୍ରକର ଓ ସଙ୍ଗୀତଜ୍ଞ ଥିଲେ । ସେ ପ୍ରାୟ ତିନି ହଜାରରୁ ଅଧିକ କବିତା ରଚନା କରିଛନ୍ତି— ୧୮୯୯ ସାଲରେ ତାଙ୍କର ପ୍ରଥମ କାବ୍ୟ ଗ୍ରନ୍ଥ ପ୍ରକାଶିତ ହେଲା । ତାଙ୍କର ପିତାମାତା ଉଭୟେ ପାଦ୍ରୀ ହୋଇ ଭାରତବର୍ଷକୁ ଆସିଥିଲେ । ସେ ନିଜେ ଥରେ ୧୯୧୧ ସାଲରେ ଭାରତ ଭ୍ରମଣ କରି ବହୁ ସ୍ଥାନ ପରିଦର୍ଶନ କରିଥିଲେ । ତାହାଙ୍କ ପକ୍ଷରେ ବାହ୍ୟିକ ଯୋଗାଯୋଗ ବଡ଼ କଥା ନ ଥିଲା, ସେ ପୁଣ୍ୟଭୂମି ଭାରତବର୍ଷର ପ୍ରକୃତ ଆତ୍ମାର ପରିଚୟ ପାଇଥିଲେ । ସେ ଅନେକ ଥର ସ୍ୱୀକାର କରିଥିଲେ ଯେ ମହାନ ହିନ୍ଦୁ ଓ ବୌଦ୍ଧ ଦର୍ଶନ ତାହାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତାଙ୍କର ସମଗ୍ର ରଚନାବଳୀରେ ଭାରତୀୟ ଦର୍ଶନ ଓ ସଂସ୍କୃତିର ପ୍ରକୃଷ୍ଟ ପରିଚୟ ମିଳେ, ବିଶେଷତଃ 'ସିଦ୍ଧାର୍ଥ' ହେଉଛି ଭାରତୀୟ ପଟ୍ଟଭୂମିକାରେ ବିରଚିତ ଏକ ଅନବଦ୍ୟ କାବ୍ୟୋପନ୍ୟାସ । ବାଇଶ ବର୍ଷ ବେଳେ କୌଣସି ଗୋଟିଏ ବହି ଦୋକାନରେ କାମ କରୁଁ କରୁଁ ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା । ୧୯୦୪ ସାଲରେ ପ୍ରକାଶିତ "ଚକ୍ର ତଳେ" ହେଉଛି ତାଙ୍କର ପ୍ରଥମ ଉପନ୍ୟାସ । ପଚଶରୁ ପଇଁତିରିଶ ବର୍ଷ ଭିତରେ

ଜୀବିକାର୍ଜନ ଉଦ୍ଦେଶ୍ୟରେ ତାହାଙ୍କୁ ଲେଖକ, ଧୀବର, ମାଳୀ, ପ୍ରଭୃତି ବିଭିନ୍ନ ପେଷା ଅବଲମ୍ବନ କରିବାକୁ ପଡ଼ିଥିଲା । ଏହି ସମୟରେ ତାଙ୍କର ମାନସିକ ବିପ୍ଳବର ସୁସ୍ପଷ୍ଟ ଚିତ୍ର ପ୍ରସିଦ୍ଧ ଉପନ୍ୟାସ "ପିଟାର କାମେନଜସିନଡ୍"ରେ ଦେଖିବାକୁ ମିଳେ । ୧୯୪୬ ସାଲରେ ସେ ସାହିତ୍ୟରେ ନୋବେଲ ପୁରସ୍କାର ପାଇଥିଲେ । ତାଙ୍କର ଅନ୍ୟାନ୍ୟ ପ୍ରଧାନ ଗ୍ରନ୍ଥ— "କ୍ନୁଲ୍ପ", "ଇଣ୍ଡିଆନ ବୁଚ", "ଡେମିୟାନ", "ଡେର ଷ୍ଟେପେନଭଲ୍ଫ", "ନାରସିଜ ଉଣ୍ଡ ଗୋଲ୍ଡମଣ୍ଡ", "ଦାସ ଗ୍ଲାସପାରଲେନସପିୟେଲ୍", "ହାରମେନ ଲଉସେର" ।

ସଂକ୍ଷିପ୍ତ ଉପନ୍ୟାସ : "ସିଦ୍ଧାର୍ଥ"

## ଯଜ୍ଞ ଦତ୍ତ ଶର୍ମା :

ହିନ୍ଦୀ ସାହିତ୍ୟରେ ବିଶିଷ୍ଟ ଲେଖକ ଯଜ୍ଞ ଦତ୍ତ ଶର୍ମାଙ୍କର (୧୯୧୬) ମିରଟ ଜିଲ୍ଲାରେ ଜନ୍ମ । ସେ ଇତିହାସରେ ଏମ୍. ଏ. ଉପାଧି ଲାଭ କରିଥିଲେ । ତାଙ୍କର "ହିନ୍ଦୀ ଗଦ୍ୟର ବିକାଶ" ଏକ ଉଚ୍ଚ କୋଟୀର ଐତିହାସିକ ତଥ୍ୟ ସମ୍ବଳିତ ସନ୍ଦର୍ଭ ରୂପେ ବିବେଚିତ । ବାଇଶ ବର୍ଷ ବେଳେ ତାଙ୍କର ପ୍ରଥମ ଉପନ୍ୟାସ "ଦୋ ପହଲୁ" ପ୍ରକାଶିତ ହୁଅନ୍ତେ, ତାଙ୍କର ସାହିତ୍ୟିକ ପ୍ରତିଭାର ପରିଚୟ ମିଳିଥିଲା । ସେ ପ୍ରାୟ ପଚିଶ ଖଣ୍ଡରୁ ଅଧିକ ଉପନ୍ୟାସ, ଗଳ୍ପ ଓ କବିତା ପୁସ୍ତକ ରଚନା କରିଛନ୍ତି । ପ୍ରସିଦ୍ଧ ଉପନ୍ୟାସ "ଶିଳାନ୍ୟାସ" ନିମନ୍ତେ ସେ ୧୯୬୬ ସାଲରେ "ସୋଭିୟେଟ ଦେଶ ନେହରୁ ପୁରସ୍କାର" ପାଇଥିଲେ । ତାଙ୍କର ଅନ୍ୟାନ୍ୟ ବିଖ୍ୟାତ ପୁସ୍ତକ— "ଝୁନଆଙ୍କ ଶ୍ରାଦ୍ଧ", "ହିବାନ ରାମ ଦୟାଲ୍", "ଭାରତ ସେବକ", "ଏକ ଅଂକଲ ପ୍ୟାର" ।

ସଂକ୍ଷିପ୍ତ ଉପନ୍ୟାସ : "ପ୍ରାୟଶ୍ଚିତ୍ତ"

## ହ୍ୱାରିୟେଟ୍ ଏଲିଜାବେଥ ବୀଚର ଷ୍ଟୋ :

ମାର୍କିନ ଔପନ୍ୟାସିକା ଶ୍ରୀମତୀ ହ୍ୱାରିୟେଟ୍ ଏଲିଜାବେଥ ବୀଚର ଷ୍ଟୋ (୧୮୧୧-୯୬) "ଟମ କକାଙ୍କ କୁଟୀର" ଉପନ୍ୟାସ ନିମନ୍ତେ ବିଶ୍ୱ ବିଦିତ । ପ୍ରେସବିଟେରିୟାନ ମନ୍ତ୍ରୀ ଲିଇମାନ ବୀଚରଙ୍କର କନ୍ୟା, ସେ ୧୮୩୬ ସାଲରେ ରେଭେରେଣ୍ଡ ସି. ଇ. ଷ୍ଟୋଙ୍କୁ ବିବାହ କରିଥିଲେ । ଦାସ ବହୁଳ କେଣ୍ଟୁକିରେ ବହୁ ବର୍ଷର ଅବସ୍ଥାନ ଭିତରେ ଦାସମାନଙ୍କ ଉପରେ ଅସହ୍ୟ ଭୟାବହ ଅତ୍ୟାଚାର ଦେଖି - ଦେଖି ସେ ଏପରି ବିଚଳିତ ହୋଇଗଲେ ଯେ ୧୮୫୧ ସାଲରେ "ଟମ କକାଙ୍କ କୁଟୀର" ଉପନ୍ୟାସ ରଚନା କଲେ, ଲୋକେ ଦାସତ୍ୱର ନିନ୍ଦନୀୟ ଦିଗ ଉପଲବ୍ଧି କରିବା ନିମନ୍ତେ । କାହାଣୀଟି ପ୍ରଥମେ "ନେସନାଲ ଏରା" ନାମକ ଦାସତ୍ୱ ପ୍ରଥା ବିରୋଧୀ କାଗଜରେ ଧାରାବାହିକଭାବରେ ଏବଂ ୧୮୫୨ ସାଲରେ ପୁସ୍ତକାକାରରେ ପ୍ରକାଶିତ ହେଲା । ଐତିହାସିକଙ୍କ ମତରେ,ଦେଶରେ ପ୍ରଚଳିତ ତତ୍କାଳୀନ ଦାସତ୍ୱ ବିରୋଧୀ ଆନ୍ଦୋଳନକୁ ବଳିଷ୍ଠ ଓ ସକ୍ରିୟ କରିବାରେ ଏହା ସାହାଯ୍ୟ କଲା, ଆଂଶିକ ଭାବରେ ଗୃହ ବିବାଦ ପାଇଁ ମଧ୍ୟ ଦାୟୀ । ଏହାର ପ୍ରଭାବ ମଧ୍ୟ ଇଂଲଣ୍ଡ ଓ ୟୁରୋପୀୟ ଅନ୍ୟାନ୍ୟ ଦେଶରେ ପଡ଼ିଲା । ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇ ଏହି ଉପନ୍ୟାସ ପାଠକଙ୍କର ଉତ୍କୃଷ୍ଟ ପ୍ରଶଂସା ଅର୍ଜନ କରିଛି । ତାଙ୍କର "ବିଦେଶୀ ରାଜ୍ୟମାନଙ୍କର ଉଜ୍ଜ୍ୱଳ ସ୍ମୃତିକଥା" ଏକ ଚମତ୍କାର ଗ୍ରନ୍ଥ । ୧୮୬୯ ସାଲରେ ତାଙ୍କର "ଶ୍ରୀମତୀ ବାଇରନ ସମର୍ଥିତ" ପୁସ୍ତକ ପ୍ରକାଶିତ ହୁଅନ୍ତେ, ସୁଧୀଜନମାନଙ୍କ ମଧ୍ୟରେ ଭିତ୍ତିହୀନ ବାଦ ବିସମ୍ବାଦ ଜାତ ହୋଇଥିଲା ଏବଂ ସମାଜରେ ପ୍ରଚଣ୍ଡ ଆଲୋଡ଼ନ ଖେଳି ଯାଇଥିଲା ।

ସଂକ୍ଷିପ୍ତ ଉପନ୍ୟାସ : "ଅଙ୍କଲ ଟମ୍‌ସ କେବିନ"